# ମହାନନ୍ଦା

ମୂଳଲେଖା : ଜୟଓ୍ବନ୍ତ ଦଳଓ୍ବୀ

ଅନୁବାଦ : ସବିତା ବାରିକ ରାଉତ

ଲାର୍କ ବୁକ୍ସ

# ମହାନନ୍ଦା

ମୂଳଲେଖା : ଜୟଵନ୍ତ ଦଲୱୀ
ଅନୁବାଦ : ସବିତା ବାରିକ ରାଉତ
ପ୍ରଚ୍ଛଦ ଓ ଛବି ସମୂହ : ବାଳ ଠାକୁର

ପ୍ରକାଶକ
ଲାର୍କ ବୁକ୍‌ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଏ/ ୯, ଭୌମ ନଗର, ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ପ୍ରକାଶ : ୨୦୧୪



ମୁଦ୍ରଣ
ମିଡ଼ିଆ ପ୍ରେସ୍
୨୪-ଇଷ୍ଟ, ଅଶୋକ ନଗର, ଭୁବନେଶ୍ୱର-୯

ଏକଶତ ଟଙ୍କା ମାତ୍ର

**MAHANANDA**

**Jaiwant Dalwi**
**Trans : Sabita Barik rout**
**Cover : Bal Thakur**

Published by
**LARK BOOKS**
Subarnarekha Chambers
A/9, Bhauma Nagar, Bhubaneswar - 751 001

First Edition ■ 2014



Printed by : **Media Press**
24-East, Ashok Nagar, Bhubaneswar - 751 009
Phone : 0674-2530632

Rupees : 100.00 only

# ଏକ

ବୋଟ୍‌ଟି ଆସି ବନ୍ଦରରେ ଲାଗିଲା । ଗଳା ଖଙ୍କାରି ଗଳା ସଫା କଲାପରି ଶବ୍ଦ କରି ପୁଙ୍ଗା ବାଜୁଥିଲା । ସେଇ ପୁଙ୍ଗାର ଆବାଜ ମନ୍ଦିରର ଗମ୍ଭୀରା ଭିତରେ ଘୂରି ଆସିବା ପରି ଚତୁର୍ଦ୍ଦିଗକୁ ବ୍ୟାପିଗଲା । ଏ ବନ୍ଦରଟିର ଅବସ୍ଥିତି ଅଦ୍ଭୁତ ପ୍ରକାରର । ପୁରାପୁରି ଗୋଳିଆ ତିନି ପାଖରେ ପାହାଡ଼ । ସିଏ ପୁଣି ନାଲି ରଙ୍ଗର । ଏବେ ଅବଶ୍ୟ ସେଗୁଡ଼ିକ ଲାଲ ଦିଶୁନାହିଁ । ଏଇ ତ ବର୍ଷା ସରିଛି । ଯେଉଁ ଆଡ଼କୁ ଚାହଁ, ସବୁଆଡ଼େ ସବୁଜ ରଙ୍ଗ ଛାଇ ହୋଇ ରହିଛି । ଦୀପାବଳୀ ଆଉ କେତେ ଦିନ କି ! ସବୁଠି ସେଇଥିପାଇଁ ଗଛପତ୍ରର ଗହଳି । ଲାଗୁଛି ଯେମିତି ସବୁଠାରେ କେବଳ ଶୁଆ ହିଁ ଶୁଆ ବସିଛନ୍ତି । ପ୍ରତ୍ୟେକ ଡାଳରେ, ପ୍ରତ୍ୟେକ ପତ୍ର ଗହଳରେ । ଲାଗୁଛି, ବନ୍ଧୁକଟିଏ ଆଣି ଗୁଳି ଫୁଟାଇବାମାତ୍ରେ ଶୁଆ ସବୁ ଉଡ଼ି ଫୁର୍‌ର ହୋଇଯିବେ । ପୁଣି ସବୁକିଛି ନିସ୍ତବ୍ଧ ହୋଇ ପଡ଼ିବ । ସବୁଜିମାର ଜଙ୍ଗଲ ମୁହୂର୍ତ୍ତକରେ ଉଜୁଡ଼ି ଯିବ ।

କଡ଼ କଡ଼ ଶବ୍ଦ କରି ବୋଟ୍‌ର ନଙ୍ଗର ପାଣି ଭିତରେ ବୁଡ଼ିଗଲା । ଅସଂଖ୍ୟ ଲହରୀ ପାଣି ଭିତରେ ବଳୟ କାଟି ଚତୁର୍ଦ୍ଦିଗକୁ ବ୍ୟାପିଯାଉଥିଲା ଏବଂ କ୍ରମଶଃ ପାଣିରେ ମିଶିଯାଉଥିଲା । କୂଳରୁ, ବନ୍ଦର ପାଖରୁ ଦୁଇଟି ଛୋଟ ନୌକା ବୋଟ୍ ପାଖକୁ ଚାଲି ଆସୁଛି । ସେଇ ଡଙ୍ଗା ଉପରେ ଆଖି ପଡ଼ିଯିବା ମାତ୍ରେ ଛାତି ଭିତରଟା କେଜାଣି କାହିଁକି କେମିତି ଗୋଟାଏ ହୋଇଗଲା, ଆବେଗରେ ! କଣ୍ଠ ବି ଥରି ଉଠିଲା ଭଳି ଲାଗିଲା । ପ୍ରତ୍ୟେକ ଥର ଏଠି ଆସି ପହଞ୍ଚିବା ପରେ ମୋର ଏମିତି ପ୍ରତିକ୍ରିୟା ହୁଏ । କିନ୍ତୁ କାହିଁକି ? ମାମୁଁଘର ଗାଁରେ ଜନ୍ମ ହୋଇଥିଲି, ସେଇଥିପାଇଁ ? ନାଁ ଏଇ ଗାଁରେ ରହି ଗାଁର ପ୍ରାଥମିକ ବିଦ୍ୟାଳୟରେ ଦୁଇବର୍ଷ ପାଠ ପଢ଼ିଥିଲି, ସେଥିପାଇଁ ? ଏଠି ଆସି ପହଞ୍ଚିଗଲେ ନିଜ ଘରକୁ ଆସିଲା ପରି ଲାଗେ । ଏଠିକାର ଅଚିହ୍ନା ଯାଗା ସବୁ ବି ଚିହ୍ନାଚିହ୍ନା ଲାଗେ । ଆପଣାର ଲାଗେ । ରାସ୍ତାର ଡାହାଣ କଡ଼ରେ ଥିବା ସେ ବିରାଟ ଜାମୁ ଗଛ, ଛୋଟ ବେଳଠାରୁ ଦେଖିଆସିଥିବା ସେ

ନଡ଼ିଆ ଗଛ, ସେ ଗଛର ମାଲିକ ଅମୁକ ଲୋକ ବୋଲି ମନେ ପଡ଼ିଯାଏ । ଯାହା ବି ହେଉ ଏଠି ପହଞ୍ଚିଯିବା ମାତ୍ରେ ମନଟା ଆପେ ଆପେ ଖୁସିରେ ନାଚିଯାଏ ।

ବୋଟ୍‌ରେ ଆସିଥିବା ଲୋକମାନଙ୍କର ବାଟଚାହିଁ ବନ୍ଦରରେ କେତେଲୋକ ଧାଡ଼ି ବାନ୍ଧି ଛିଡ଼ା ହୋଇଛନ୍ତି । ବୋଟ୍‌ର କଡ଼ରେ ଥିବା ରେଲିଂ ଧରି ମୁଁ ଛୁଆଙ୍କ ପରି ତାଙ୍କ ଆଡ଼କୁ ଚାହିଁଲି । ଗୋଟିଏ ବି ଚିହ୍ନା ମୁହଁ ମୋତେ ଦିଶିଲା ନାହିଁ । ଭାବିଲି, ଟିକେ ଦୂରରେ ଅଛି ତ, ସେଥିପାଇଁ ବୋଧେ ଚିହ୍ନିପାରୁନି । କିନ୍ତୁ ନାଁ ! ସେ କଥା ନୁହଁ । କାରଣ, ଅନ୍ୟ ଯାତ୍ରୀମାନେ ବୋଟ୍ ଉପରୁ ରୁମାଲ ହଲାଇ ସେମାନଙ୍କର ପରିଚିତ, ଆତ୍ମୀୟମାନଙ୍କ ସହ ବଡ଼ପାଟିରେ ଚିତ୍କାର କରି ଡାକ ମାରୁଥିଲେ । ତାଙ୍କର ସେ ଚିତ୍କାର ଭିତରୁ ତାଙ୍କ ମନର ଖୁସି ବାରି ହୋଇ ପଡୁଥିଲା । ଅପରିଚିତଙ୍କ ପରି ଛିଡ଼ାହୋଇଥିଲି ଏକୁଟିଆ ମୁଁ ।

ତଥାପି ବି ମୋ ଆଖି ଚାରିଆଡ଼େ ବୁଲି ଆସିଲା । ମନ ଭିତରୁ କିଏ ଯେମିତି କହୁଥିଲା ଏଇ ଭିତରେ ମାମୁଁ ଛିଡ଼ାହୋଇଛନ୍ତି ବୋଧହୁଏ । କିନ୍ତୁ ସେଇଟା କେବଳ ମନର ଭ୍ରମ ଥିଲା ଯାହା ! ମାମୁଁ ମୋତେ ନେବା ପାଇଁ ଆସିବେ– ଏ କଥା ଆଦୌ ସମ୍ଭବ ନଥିଲା ! କାରଣ ସେ ଥିଲେ ଦୁନିଆରେ ସବୁଠାରୁ କମ୍ କଥା କହୁଥିବା ବ୍ୟକ୍ତି ବିଶେଷମାନଙ୍କ ମଧ୍ୟରୁ ଜଣେ । ଏବେ ମୁଁ ନ ଆସିଥିଲେ ଚଳିଥାଆନ୍ତା — ଏମିତି ଭାବନା ବି ତାଙ୍କର କେବେ ନ ଥାଏ । ମୁଁ ଘରେ ପହଞ୍ଚିଯିବା ମାତ୍ରେ ପ୍ରତିଦିନ ମାଛ ଆସିବାର ବ୍ୟବସ୍ଥା ହୋଇଯାଏ । ନ କହିଲେ ବି ପ୍ରତିଦିନ କେହି ନାଁ କେହି ମୋତେ ଭଲ ଲାଗୁଥିବା ଜିନିଷସବୁ ନେଇ ଆସି ପହଞ୍ଚି ଯାଆନ୍ତି । ଏ ସବୁ ସେଇ ମାମୁଁଙ୍କର ନିର୍ଦ୍ଦେଶରେ ହିଁ ହୋଇଥାଏ । ଏକଥା ବୁଝିବାକୁ କଷ୍ଟ ହୁଏନି । କିନ୍ତୁ ମୁଁ ଆସିଛି ବୋଲି କେତେବେଳେ ମୋ ପାଖରେ ବସି ଦି'ପଦ କଥା କହିବା, କିମ୍ବା ମୋ ମାଆ ବିଷୟରେ କିଛି ପଚାରିବା ବା ନିଜ ବିଷୟରେ ହେଉ କି ମାଇଁଙ୍କ ବିଷୟରେ ହେଉ କିଛି କହିବା – ଏମିତି କେବେ ହୁଏନାହିଁ । ବରଂ ବାରିଆଡ଼େ କାଠ ଗଡ଼ ଖଣ୍ଡେ ପକାଇ ତା ଉପରେ ଚୁପଚାପ କୁରାଢ଼ୀ ମାରି ଚାଲିଥିବେ । କେତେବେଳେ ଟିକୁ ଗଛର କଲମୀ କରିବେ ନହେଲେ ଘାସବିଡ଼ା ଉଠେଇ ଗୁହାଳକୁ ଚାଲିଯିବେ । ବାସ୍ ସେଇଠି ଲାଖି ରହିଯିବେ । ତେଣୁ ଆଠ ମାଇଲ ବାଟ ଅତିକ୍ରମ କରି ମାମୁଁ ମୋତେ ନେବାପାଇଁ ଆସିବା କୌଣସି ମତେ ସମ୍ଭବ ନଥିଲା । ଅବଶ୍ୟ କୋର୍ଟ କଚେରୀ କାମ ଥିଲେ ସେ ଏ ଆଠ ମାଇଲ ବାଟ ଚାଲି ଚାଲି ଆସନ୍ତି ଆଉ

ଯାଆନ୍ତି ବି । ମାସରେ ଥରେ ଦୁଇଥର ପ୍ରାୟ ତାଙ୍କୁ ଆସିବାକୁ ପଡ଼େ ବୋଲି ଆସନ୍ତି । କିନ୍ତୁ ତାଙ୍କର ଏକମାତ୍ର ଭଉଣୀର ଏକମାତ୍ର ପୁଅ, ତାଙ୍କର ଭଣଜାକୁ ନେବାପାଇଁ ସେ କେବେ ବି ଆସିବେ ନାହିଁ । କାରଣ ଯଦି ବି ସେ ଆସନ୍ତି, ଭଣଜା ସହିତ କ'ଣ କଥା ହେବେ, ତାକୁ କ'ଣ କହିବେ ? ମୁହଁ ଖୋଲିବା ତାଙ୍କପାଇଁ ଗୋଟିଏ ବିରାଟ ସମସ୍ୟା !

ଗୋଟିଏ ଛୋଟ ନୌକା ଆସି ବୋଟ୍ ପାଖରେ ପହଞ୍ଚିଗଲା । ପ୍ରଥମେ ବୋଟ୍‌ରୁ ଜିନିଷପତ୍ର ସବୁ ସେ ନୌକାରେ ଓହ୍ଲେଇ ଦିଆଗଲା । ସେ ପର୍ଯ୍ୟନ୍ତ ମୁଁ ସେମିତି ଗୋଟିଏ କଡ଼ରେ ବୋଟ୍‌ର ରେଲିଂ ଧରି ଛିଡ଼ାହୋଇଥିଲି । ସାମ୍ନାରେ ବାଁ କଡ଼ରେ, ପାହାଡ଼ ଉପରେ ଥିବା ଡାକବଙ୍ଗଳାଟି ଦିଶୁଥିଲା । ସେ ଡାକବଙ୍ଗଳାର ପିରାମିଡ୍ ଆକାରର ଶିଖର, ପିଲାଟିଦିନରୁ ମୋ ମନରେ ଲାଖି ରହିଥିଲା । ଟାଇଲ ଛପରର ସେ ଛାତର ଆକାର ମୋ ପାଇଁ ଖୁବ ଆକର୍ଷଣୀୟ ଥିଲା । ତା ପାଇଁ ମନ ଭିତରେ ଗୋଟାଏ ଅହେତୁକ ଆକର୍ଷଣ ଥିଲା । ବନ୍ଦରରେ ପହଞ୍ଚିବା ପୂର୍ବରୁ, କିଛି ଦୂରରୁ ପାହାଡ଼ ଉପରର ଏଇ ବଙ୍ଗଳାଟି ଗୋଟିଏ ଛୋଟିଆ ବିନ୍ଦୁ ପରି ଦିଶିଯାଏ । ତା' ଉପରେ ଦୃଷ୍ଟି ପଡ଼ିଯିବା ମାତ୍ରେ ମନଟା ଖୁସି ହୋଇଯାଏ । ବନ୍ଦର ପାଖ ହୋଇଆସିଲା ବୋଲି ଜଣାପଡ଼ିଯାଏ । ବୋଟ୍ ବନ୍ଦରରେ ପହଞ୍ଚିବା ପରେ, ମନ୍ଦିରକୁ ଲମ୍ବିଯାଇଥିବା ପରି ପାହାଚ ଶ୍ରେଣୀଟିଏ ସେଇ ପାହାଡ଼ ଉପରୁ ଦିଶିଯାଏ । ମନେମନେ ଭାବେ ସେ ପାହାଚ ସବୁ ଚଢ଼ି ଚଢ଼ି ଦିନେ ଯାଇ ମୁଁ ସେଇ ଡାକବଙ୍ଗଳାରେ ପହଞ୍ଚିଯିବି । କିନ୍ତୁ ଆଜିଯାଏ କେବେ ବି ସେଯାଏ ଯାଇ ପାରିନାହିଁ । ବଙ୍ଗଳାଟିର ଭିତର ନିଶ୍ଚୟ ଖୁବ ସୁନ୍ଦର ହୋଇଥିବ ତଥା ସାଜସଜ୍ଜା ସବୁ ଖୁବ ଆଧୁନିକ ଧରଣର ହୋଇଥିବ ବୋଲି ମନେମନେ ଖୁବ କଳ୍ପନା ଜଳ୍ପନା କରେ । ଏଇ କିଛିଦିନ ତଳେ ମୁଁ ଏମ୍.ଏ. ପାସ କରିବାର ଠିକ୍ ପରେ ପରେ ଘରେ ମୋ ବାହାଘର କଥା ଉଠିଥିଲା । ଝିଅ ଦେଖି ଅବଶ୍ୟ ମୁଁ ନାପସନ୍ଦ କରି ଦେଇଥିଲି । ସେ କଥା ଅଲଗା । କିନ୍ତୁ ଝିଅଟି ଯଦି ମୋର ପସନ୍ଦ ହୋଇଥାଆନ୍ତା ତେବେ ବାହାଘର ପରେ ମଧୁଚନ୍ଦ୍ରିକା ପାଇଁ ନିଶ୍ଚିତ ଭାବରେ ମୁଁ ଏଇ ବଙ୍ଗଳାକୁ ହିଁ ଆସିଥାଆନ୍ତି । ତେବେ ବାହାଘର କଥା ଉଠିଲେ କାହିଁକି କେଜାଣି, କିଏ ଯେମିତି କାନେ କାନେ ଏଇ ଡାକବଙ୍ଗଳା କଥାଟା ମନେ ପକାଇ ଦେଉଥାଏ । ଏବେ ବି ଲାଗୁଛି, ବାହାହେଲେ ତାକୁ ସାଙ୍ଗରେ ନେଇ ଅନ୍ତତଃ ଦୁଇ ସପ୍ତାହ ପାଇଁ ଏଇ ବଙ୍ଗଳାରେ ରହିବା ପାଇଁ ଆସିବାଟା ନିଶ୍ଚିତ ।

ବୋଟ୍‌ରୁ ଡଙ୍ଗା ଉପରକୁ ଆସି ମୁଁ ବନ୍ଦରରେ ପହଞ୍ଚିଲା ବେଳକୁ ଲଖୋବାକୁ ଧଇଁସଇଁ ହୋଇ ଆସୁଥିବାର ଦେଖିଲି । ମୋ ପାଖକୁ ଦୌଡ଼ି ଆସି ମୋତେ ବାବୁ... ବାବୁ କହି କୁଣ୍ଢେଇ ପକେଇଲା । ଉପରେ ଶଗଡ଼ ଛିଡ଼ାକରି ସେ ମୋତେ ହିଁ ଅପେକ୍ଷା କରି ରହିଥିଲା । ଲଖୋବା ହେଲା ମାମୁଁଘରର ଅତି ବିଶ୍ୱାସୀ ଚାକର । ଚାକର କହିଲେ ବି ଠିକ୍ ହେବ ନାହିଁ । କାରଣ ମାମୁଁଘରେ ସେ ଥିଲା ଘର ମଣିଷ ପରି । ଗତ ପଇଁତିରିଶ ବର୍ଷ ହେଲାଣି ମାମୁଁଙ୍କର ସେ ହେଲା ହାତବାରିଶି । ତା' ନିଜ ଘର କୁଆଡ଼େ ସିଆଡ଼େ ପାହାଡ଼ିଆ ଘାଟୀ ଅଞ୍ଚଳରେ । ସୋମବତୀ ଯାତ୍ରା ଦେଖିବାକୁ ଆସିଥିଲା । କ'ଣ ମନ ହେଲା କେଜାଣି ଏଠିକୁ ଆସିଲା ସମୁଦ୍ର ଦେଖିବାପାଇଁ । ସେଇ ଆସିଛି ତ ଆସିଛି, ଆଜିଯାଏ ଫେରିବାର ନାଁ ଧରିନି । ସେଇ ଦିନଠାରୁ ହିଁ ସେ ମାମୁଁଘରେ ଅଛି ।

ରାସ୍ତାକୁ ଆସିବା ପରେ ଲଖୋବା ଶଗଡ଼ ଯୋଚି, ବଳଦଙ୍କ ଲାଞ୍ଜ ଉପରେ ହାତ ପକେଇ ଥାପୁଡ଼େଇ ଦେଲା। ଗାଡ଼ି ଚାଲିବା ଆରମ୍ଭ ହୋଇଗଲା । ବଳଦଙ୍କ ବେକରେ ବନ୍ଧା ହୋଇଥିବା ଘଣ୍ଟି ଗୁଡ଼ିକର ରୁଣୁଝୁଣୁ ଶବ୍ଦର ଲୟ ସହିତ ତାଳ ଦେଇ ଗାଡ଼ି ଚାଲିଥିଲା । ମଝିରେ ମଝିରେ ଲଖୋବା ମୋତେ ମୋ ମାଆ କଥା ବି ପଚାରି ଦେଉଥିଲା । ଏବର୍ଷ ବର୍ଷା କେମିତି ହୋଇଛି, ଫସଲ କେମିତି ହେବ ସେ ବିଷୟ ବି କହୁଥିଲା । ସେ ସବୁ ଶୁଣିବାପାଇଁ ମୋର ଆଦୌ ଆଗ୍ରହ ନଥିଲା । ବଳଦଙ୍କ ଘଣ୍ଟିର ଛନ୍ଦ ସହ ତାଳ ମିଳାଇ ଲଖୋବା ତାର କର୍କଶ କଣ୍ଠରେ ତାଙ୍କ ଘାଟୀ ଅଞ୍ଚଳର ଗୀତର ସ୍ୱର ମେଳେଇଦେଲା । ଏତେ ବର୍ଷ ହେଲାଣି ଏ କୋଙ୍କଣ ଅଞ୍ଚଳରେ ବିତେଇଲା ପରେ ବି ଲଖୋବା ତା ପାହାଡ଼ିଆ ଭାଷା ଓ ସେଇ ଆଡ଼ର ରଂଗଢଂଗ ଆଜିଯାଏ ଛାଡ଼ି ପାରିନଥିଲା । ସେ ଯେ କି ଗୀତ ଗାଉଥିଲା ସେ କଥା ଠାକୁରଙ୍କୁ ଜଣା ! ମଝିରେ ତା'ର କାଶ ଉଠିବାରୁ ଗୀତ ଆପେ ଆପେ ବନ୍ଦ ହୋଇଗଲା । କାଶ ବନ୍ଦହେବା ପରେ ମୋତେ ଅନେଇ କହିଲା, 'ଇଏ ଆମ ଘାଟୀ ଗୀତ । ଜାଣିପାରିଲ ତ ?'

'ବଢ଼ିଆ ଲାଗିଲା !' କେବଳ ତାକୁ ଖୁସି କରିବାକୁ କହିଲି ।

ସତକୁ ସତ ସେ ବହୁତ ଖୁସି ହୋଇଗଲା । କାରଣ ଗଳା ସଫାକରି ପୁଣି ଗୀତର ସ୍ୱର ମେଳେଇ ଦେଲା ।

ଛୋଟ ଧୋତି ଖଣ୍ଡିଏ । ତା' ଉପରେ ମାମୁଁଙ୍କର କମିଜ । ମୁଣ୍ଡରେ ଘାଟୀ

ବୁଙ୍ଗରେ ପିନ୍ଧା ଠେକା । ଏତିକି ଥିଲା ଇଖୋବାର ପୋଷାକ । ଧୋତି ଓ ଠେକା ନାଲି ମାଟିରେ ନେସି ହୋଇ ରଙ୍ଗୀନ ଦିଶୁଥିଲା । କମିଜଟି କିନ୍ତୁ ବେଶ ସଫା ଥିଲା । କେବଳ ବନ୍ଦରଯାଏଁ ଆସୁଛି ବୋଲି ସେ କମିଜଟି ପିନ୍ଧି ଆସିଥିବ । ନହେଲେ ଅଣ୍ଟାରେ ଖୋସଣୀ ମାରି ପିନ୍ଧିଥିବା ଧୋତି ଓ ମୁଣ୍ଡରେ ଠେକା - ଏ ହେଲା ତା'ର ନିତିଦିନିଆ ବେଶ ପୋଷାକ ।

ତାକୁ ଟିକିଏ ଚିଡ଼ାଇବା ପାଇଁ କହିଲି, 'ଇଖୋବା, ଏ ବର୍ଷ ତୋ ଠେକା ଧୋଇଛୁ କି ନାହିଁ ?'

'ତୁମ ମାମୁଁଙ୍କ ଧାଁ ଧପଡ କାମରୁ ଛୁଟି ମିଳିଲେ ସିନା ?' ସେ ବି ହସି ହସି କହିଲା । ଏ ଇଖୋବା ବି ଗୋଟାଏ ଅଦ୍ଭୁତ ମଣିଷଟିଏ । ଏବେ ତ ବୟସ ପଚାଶ ଛୁଇଁଲାଣି । କିନ୍ତୁ ଆଜିଯାଏ ନାଁ ବାହାଘର ନାଁ ଘରସଂସାର । ଥରେ ମାମୁଁ ତା' ବାହାଘର କରିଦେବାପାଇଁ ସବୁ ଠିକଠାକ କରିଥିଲେ । ଆଠ ଦିନଯାଏ ଘରଛାଡ଼ି କୁଆଡ଼େ ଚାଲିଗଲା ଯେ ତା' ପତ୍ତା ସୁଦ୍ଧା କେହି ପାଇଲେ ନାହିଁ । ବାହାଘର ଭାଙ୍ଗିଯିବା କଥା ଶୁଣିଲା ପରେ ଘରକୁ ଫେରିଲା । ଦେହ ହାତ ସବୁଠି ଫଟା ଫଟା ଚମ । କଥା କହିବା ବେଳେ ଛେପ ଛିଡ଼ିକି ପଡ଼େ । ଗୋଟିଏ କଥାକୁ ବାରମ୍ବାର କହେ । ଲୋକମାନେ ତା ସହିତ ସବୁବେଳେ ଥଟ୍ଟାମଜା କରନ୍ତି । ଏବେ ବି କେହି କେହି ପଚାରି ଦିଅନ୍ତି -

'ଇଖୋବା, ଆରେ ତୋ ବାହାଘର ମିଠେଇ କେବେ ମିଳିବ ?'

'ନାଁ ନାଁ ଏବର୍ଷ ତ ମୂଳରୁ ନୁହଁ, ଦେଖିବା ଆରବର୍ଷକୁ ।'

ସେ ବି ଏମିତି ଉତ୍ତର ଦେଇଥାଏ । ଗତ ତିରିଶବର୍ଷ ହେଲାଣି ସେ ଏଇୟା ହିଁ କହି ଆସୁଥିଲା । ଏବେ କିନ୍ତୁ ଏଇ କିଛି ବର୍ଷ ମାନେ ପାଞ୍ଚ ଛବର୍ଷ ହେଲାଣି ଗାଁ ଭିତରେ କେଉଁଠି ଗୋଟିଏ ସ୍ତ୍ରୀ ଲୋକ ସହ ସଂପର୍କ ରଖିଛି ବୋଲି ଶୁଣିଛି । ମାଆଠାରୁ ହିଁ ଶୁଣିଥିଲି । ବୁଢ଼ା ଦିନରେ ଇଖୋବାର ଏ ସୁଆଙ୍ଗ ବାହାରିଛି ବୋଲି କହି ମାଆ ହସିଥିଲା । ସେ କଥା ମୋର ହଠାତ ମନେ ପଡ଼ିଗଲା ।

କହିଲି, 'ଇଖୋବା, ମାଆ ପଚାରୁଥିଲା ତୋ ବାହାଘର କଥା । କେବେ ହଉଛି ?'

ଟିକିଏ ଢୋକ ଗିଳି, ମୁହଁଟି ଶୁଖେଇ ଦେଇ ଇଖୋବା ହସିଦେଲା ଉଦାସିଆ ଭାବରେ । ଦାନ୍ତ ମଝିରୁ ଛେପ ଉଡ଼େଇ ଉତ୍ତର ଦେଲା, 'ଏବର୍ଷ ନୁହେଁ, ଆର ବର୍ଷକୁ ଦେଖିବା !'

ଏତିକି କହିଦେଇ ସେ ବଳଦ ଉପରେ ହାତ ଥାପୁଡ଼େଇ ଦେଲା । ଆଉ ଗୀତ ଫିତ ନ ଗାଇ ବହୁତବେଳ ଯାଏ ସେମିତି ଚୁପଚାପ ହୋଇ ବସିଲା । ମନେ ମନେ ଭାବିଲି ଲଖୋବା କେଉଁ ଚିନ୍ତାରେ ବୁଡ଼ିଗଲା କି ! ଲଖୋବା ଯେ ଚିନ୍ତା କରିପାରିବ, କି ଠାକୁର ତାକୁ ଚିନ୍ତା କରିବାପାଇଁ କିଛି ଶକ୍ତି ଦେଇଥିବେ - ଏ ବାବଦରେ ମୁଁ କେବେ ଭାବି ନଥିଲି । ଅଣ୍ଟା ଭାଙ୍ଗି କାମ କରିବା ଆଉ ତା ବଦଳରେ ଦି' ଓଳି ଦି' ମୁଠା ଖାଇବା ଏତିକି ଭିତରେ ବୋଧହୁଏ ତାର ସମସ୍ତ ଜୀବନ ସୀମାବଦ୍ଧ ଥିଲା ।

ରବଳନାଥ ମନ୍ଦିର ସାମ୍ନାରେ ଦିଶି ଯିବାରୁ ଆପେ ଆପେ ହାତ ଯୋଡ଼ି ହୋଇଗଲା । ମନ୍ଦିର ସାମ୍ନାରେ ଦୀପସ୍ତମ୍ଭ ଉପରେ ଚଢ଼ି ଦୁଇଜଣ ମୂଲିଆ ଶିଉଳି ଛଡ଼ଉଥିଲେ ।

'ରଙ୍ଗକାମ ଚାଲିଛି । ଯାତ୍ରା ଆସି ମୁଣ୍ଡ ଉପରେ ହେଲାଣି ନାଁ !' ଏତିକି କହି ଲଖୋବା ନମସ୍କାର କଲା ହାତ ଯୋଡ଼ିଦେଇ ।

ଶଗଡ଼ ଆଗକୁ ଚାଲିଲା ।

ଗାଁ ମଝିରେ ଥିବା ବୁଢ଼ା ବରଗଛ ଦୃଷ୍ଟି ସାମ୍ନାକୁ ଆସିଲା । ଯେମିତି ଥିଲା ମୋ ପିଲାବେଳେ ଏବେବି ସେମିତି ଅଛି । ଓହଳ ସବୁ ତଳକୁ ଲମ୍ବିଥିଲା ଆଗପରି । ଦୁଇଚାରି ଜଣ ପିଲା ସେଇ ଓହଳରେ ଓହଳି ଦୋଳି ଖେଳୁଥିଲେ । ଗ୍ରାମର ମୂଳ ଲୋକ ଜଣକ ଏଇଠି ସମାଧି ନେଇଥିଲେ ବୋଲି ସମସ୍ତେ କହନ୍ତି । ସେଇ ଯାଗା ଉପରେ ଏଇ ବରଗଛଟି ଉଠିଥିଲା । ବରଗଛ ମୂଳରେ ମିଶ୍ରି ପୁଡ଼ିଆଟିଏ ରଖି କିଏ ଜଣେ ସେଠି ଛିଡ଼ାହୋଇଥିଲା ।

ତା'ପାଖରେ ଗୋଟିଏ ପଥର ଉପରେ ବସି ପାଗଳଟିଏ ତା'ର ଦାଢ଼ୀ କୁଣ୍ଡଉଥିଲା । କ'ଣ ଯେମିତି ଖୋଜୁଥିଲା ସେଠି ସେ । ଗୋଟିଏ ହାତରେ ବିଡ଼ିଟିଏ ବି ଟାଣୁଥିଲା ।

ଗାଡ଼ି ଆଉ ଟିକିଏ ଆଗକୁ ଗଲାପରେ ପକୁଡ଼ି ବାସ୍ନା ଆସି ନାକକୁ ଛୁଇଁଗଲା । ଦୁଲା ଦୋକାନ ପକୁଡ଼ି ବାସ୍ନା । ଯେଉଁ ଦୁଇ ବର୍ଷ ଏଇଠି ରହି ପାଠ ପଢ଼ିଥିଲି, ସେତେବେଳେ ଲୁଚି ଲୁଚି ଆସି ଦୁଲା ଦୋକାନରେ ପକୁଡ଼ି ଖାଇବା ମୋର ଗୋଟିଏ ବିରାଟ କାମ ଥିଲା । ସେ କଥା ମନେ ପଡ଼ିଯବାରୁ ମନଟା ଛଟପଟ ହୋଇଗଲା । ଯେତେ ଯାହା ହେଲେ ବି ପିଲାଦିନ, ପିଲାଦିନ ! ସେ ମଜା ଆଉ କେଉଁଠୁ ମିଳିବ !

ଏଇଠୁ ଚାରିପାଦ ଗଲେ ଆଗରେ ମାମୁଁଘର ।

ହୁର୍‌ର ହୁର୍‌ର କହି ଲଖୋବା ଶଗଡ଼କୁ ସିଧା ଗେଟ ଭିତରକୁ ନେଇଗଲା । ଚଉରା ସାମ୍ନାରେ ମାମୁଁ କାଠ ହାଣୁଥିଲେ । ବଡ଼ କାଠସବୁକୁ ଛୋଟ ଛୋଟ ଖଣ୍ଡ କରି ରଖୁଥିଲେ ଖରାବେଳଟାରେ । ଏ ଖରାରେ ଦେହ ଜଳିଯାଉଥିଲା । ସେଇଥିରେ ଖାଲି ଦେହ ହୋଇ ମାମୁଁ ବେଶ ବଳ ଖର୍ଚ୍ଚ କରି କୁରାଢ଼ୀ ପାହାର ଦେଇ ଚାଲିଥିଲେ। ଟପଟପ ହୋଇ ଝାଳ ନିଗିଡି ପଡୁଥିଲା ତାଙ୍କ ଦେହରୁ । କୁରାଢ଼ୀ ଉଠେଇଲା ବେଳକୁ ପିଠିର ମାଂସପେଶୀ ସୁଦ୍ଧା ଉଠୁଥିଲା ପଡୁଥିଲା ସେ ପାହାର ସହ ।

ଶଗଡକୁ ଆଣି ଲଖୋବା ବାରି ଭିତରେ ପହଞ୍ଚି ସାରିଲାଣି ବୋଲି ମାମୁଁ ଠିକ ଜାଣିଥିଲେ । ତଥାପି ଶଗଡ଼ ଆଡ଼କୁ ଲକ୍ଷ୍ୟ ନଦେଇ ସେ ତାଙ୍କ କାମ କରି ଚାଲିଥିଲେ ।

'ହେଇ ନିଅ ତୁମ ଭଣଜାକୁ ତୁମ ଜିମା ଦେଲି !' ଲଖୋବା ପାଟି କରି କହିଲା ।

ଗୋଟିଏ ହାତ କୁରାଢ଼ୀ ବେଣ୍ଟ ଉପରେ ଓ ଅନ୍ୟ ହାତଟି ଅଣ୍ଟାରେ ରଖି ମାମୁଁ ରହିଗଲେ । ବୁଲିପଡ଼ି ଚାହିଁଲେ । ମୁଁ ହସିଦେଲି । ସେ କିନ୍ତୁ ହସିଲେନି । ତାଙ୍କର ଏ ପ୍ରତିକ୍ରିୟାରେ ମୁଁ ମୋଟେ ଆଶ୍ଚର୍ଯ୍ୟ ହେଲିନାହିଁ । ମାମୁଁଙ୍କୁ ତ ମୁଁ କେବେ ବି ହସିବାର ଦେଖିନାହିଁ । ବରଂ ଭାଗଚାଷୀ ଠିକ ସମୟରେ ଧାନ ନ ଦେଲେ କିମ୍ବା କୌଣସି ପ୍ରକାରର ଟାଳଟୁଳ କଲେ ତାକୁ ରାଗିଯାଇ ଶୋଧିବା କିମ୍ବା କେବେ କେବେ ତା ବେକଧରି କାନମୂଳିଆ ବ୍ରହ୍ମଚାପୁଡ଼ା ମାରିବା ମୁଁ ଦେଖିଥିଲି । ସେତେବେଳେ ମାମୁଁଙ୍କର ଯେଉଁ ବିକଟ ଚିତ୍କାର ତାକୁ ଶୁଣିଲେ ଛାତି ଥରି ଉଠିବ ।

ମାମୁଁଙ୍କ ମୁହଁରେ ହସ ଦେଖିବା କିମ୍ବା କାହା ସହିତ ସେ ମନଖୋଲି ଗପସପ କରୁଥିବାର ଦେଖିବା କଳ୍ପନାର ବାହାରେ ଥିଲା । ତେଣୁ ମୋତେ ଦେଖି ସେ ନହସିଲେ ବି ସେଥିରେ ଆଶ୍ଚର୍ଯ୍ୟ ହେବାଭଳି କିଛି ନଥିଲା ।

କିଛି ତ ଗୋଟେ କହିବାକୁ ପଡ଼ିବ ଭାବି କହିଲେ 'ଯା, ଯା କୂଅମୂଳେ ପାଣି ଅଛି, ହାତ ଗୋଡ଼ ଧୋଇ ଆ ।'

'ହଁ ଯାଉଛି ।'

ମୁଁ ଏତିକି କହି ସିଧା କୂଅ ମୂଳକୁ ଚାଲିଗଲି । ମାମୁଁ ସଙ୍ଗେ ସଙ୍ଗେ କୁରାଢ଼ୀ ଧରି କାମରେ ଲାଗିଗଲେ । ତାଙ୍କର ସଂପୂର୍ଣ୍ଣ ମନଧ୍ୟାନ ତାଙ୍କ କାମରେ ହିଁ ରହିଲା ।

ହାତଗୋଡ଼ ଧୋଇ ମୁଁ ପିଣ୍ଡା ଉପରକୁ ଚଢ଼ିଲା ବେଳକୁ କାନ୍ଥରେ ଲାଗିଥିବା ଘଣ୍ଟାରେ ଏଗାରଟା ବାଜିଲା । ଏଡ଼େବଡ଼ ଘର ଭିତରେ ଏ ଘଣ୍ଟାର ଆବାଜ କୁଆଡ଼େ

ମିଳେଇ ଯାଉଥିଲା । ଆଗେ ବଡ଼ ବଡ଼ ଲୋକମାନେ ପ୍ରୟୋଜନ ଅନୁସାରେ ବେଶ ବଡ଼ ବଡ଼ ଖଞ୍ଜାଘର ସବୁ କରୁଥିଲେ । ବାହାରେ ସିମେଣ୍ଟ ପିଣ୍ଡା, ଭିତରେ ଅନେକ ଘର । ସେତେବେଳର ବ୍ୟବହାର ଅନୁସାରେ ପ୍ରତ୍ୟେକ ଘରର ଗୋଟିଏ ଗୋଟିଏ ନାଁ ମଧ୍ୟ ଥିଲା । ଠାକୁରଘର, ଅମାରଘର, ଭଣ୍ଡାରଘର, ପୋଖତୀ ଘର, ନଡ଼ିଆଘର, ରୋଷେଇ ଘର ଇତ୍ୟାଦି । ସେମିତି ନାଁ ଦେଇଥିଲେ ବି ତା'ର ଅର୍ଥ କିଛି ନଥିଲା । ବିଶେଷତଃ ପୋଖତୀ ଘର । ସେ ଘରେ ଅବଶ୍ୟ ମୁଁ ଜନ୍ମ ହୋଇଥିଲି । କିନ୍ତୁ ତା' ପରେ ସେ ଘର ଆଉ କେବେ ବି ବ୍ୟବହାର ହୋଇନଥିଲା । ପୂର୍ବରୁ ହୁଏତ କେତେଜଣଙ୍କର ନାହି କଟାହୋଇ ସେଇ ଘର ମାଟିତଳେ ପୋତା ହୋଇଥିବ । ଏବେ କିନ୍ତୁ ଆଉ ସେମିତି ଯୋଗ ଆସିପାରିଲା ନାହିଁ ।

ଠାକୁର ଘରେ ଠାକୁର ପୂଜା ହୁଏ । ଗଣେଶ ଚତୁର୍ଥୀରେ ଗଣେଶ ପୂଜା ହୁଏ । ଅମାର ଘରେ ଧାନ ରହେ । ନଡ଼ିଆ ଘରେ ନଡ଼ିଆ ରଖାଯାଏ । ବାକି ସବୁ ଘର ଅଂଧାରିଆ ଦିଶେ । କୋଠି ଘରର ଗଡ଼ମାଟୁରେ ହଣ୍ଡା ହାଣ୍ଡି ପରାତ । ସେସବୁରେ ଆଜିକାଲି କାହାର ହାତ ସୁଦ୍ଧା ବାଜେନାହିଁ । ମଝିଘର ତ ପୁରା ଅନ୍ଧାର । ରୋଷେଇଘର ଭିତରେ ଧୂଆଁ । ସତ କହିବାକୁ ଗଲେ ମାମୁଁ ମାଇଁ ଓ ଲଖୋବା ଏଇ ତିନି ଜଣଙ୍କ ପାଇଁ ରୋଷେଇ । କିନ୍ତୁ ଦିନସାରା ଚୁଲିରେ କାଠ ପଡ଼ିଥାଏ । ଧୂଆଁ ଚାଲିଥାଏ ଅନବରତ । ଦିନସାରା ମାଇଁ କିଛି ନାଁ କିଛି କାମରେ ବ୍ୟସ୍ତ ଥାଆନ୍ତି । ସେଇ ଚୁଲି ପାଖରେ । ସେ ଘରର ଚଳଣି ହିଁ ଗୋଟାଏ ଭିନ୍ନ ପ୍ରକାରର । ଉଦୁଉଦିଆ ଖରାବେଳଟାରେ ବି ମାଇଁ କାମରେ ଲାଗିଥିବେ । କ'ଣ କାମ କରନ୍ତି ଠାକୁରଙ୍କୁ ଜଣା । କିନ୍ତୁ ଝାଳନାଳରେ ଗାଧୋଇବା ପରି ଦିଶୁଥିବେ ସବୁବେଳେ । ମାଆ ଆଗରେ ଯଦି ମୁଁ କେବେ ମାଇଁଙ୍କ କଥା କହେ ସେ ସାଙ୍ଗେ ସାଙ୍ଗେ ଚିଡ଼ିଯାଇ କହେ 'ଛୁଆ ପିଲା ହେଲା ପରେ ସେ ଆପେ ଆପେ ବଦଳିଯିବ । ସବୁ ଠିକ ହୋଇଯିବ ।'

ମଝିଘର ଡେ଼ଇଁ ମୁଁ ରୋଷେଇଘର ଭିତରକୁ ପଶିଲି । ମାଇଁ ତାଙ୍କ କାମ ଭିତରେ ବୁଡ଼ି ଯାଇଥିଲେ । ଚୁଲିରେ କାଠ ପକେଇ ନଳରେ ଫୁଙ୍କୁଥିଲେ । ବାହାରେ କିଏ ଆସି ପହଞ୍ଚିଲାଣି ବୋଲି ତାଙ୍କୁ ମାଲୁମ ହିଁ ନଥିଲା । ବାହାରେ କ'ଣ, ମୁଁ ଆସି ରୋଷେଇ ଘରେ ପଶି ସାରିଥିଲି ବୋଲି ବି ସେ ଜାଣି ପାରି ନଥିଲେ ।

'ମାଇଁ !' ମୋ ଡ଼ାକରେ ତାଙ୍କର ଚେତା ପଶିଲା । ଚମକି ପଡ଼ି ଅନେଇଲେ । ମୋ ଉପରେ ଆଖି ପଡ଼ିଲା କ୍ଷଣି ହସିଦେଲେ ।

'ବାବୁଲ ! ଆରେ କେତେବେଳେ ଆସିଲୁ ?'

'ଏଇ ସାଙ୍ଗେ ସାଙ୍ଗେ ।'

'ବୋଟ୍‌ରେ ଆସିଲାବେଳେ କିଛି ଅସୁବିଧା ହୋଇନି ତ ?'

'ନାଁ ।'

'ଆ, ବସ, ବସ, ଏଇଠି ବସ ।'

କାନ୍ଥରେ ଡ଼େରା ହୋଇଥିବା ଗୋଟିଏ ପିଢ଼ା ପକେଇ ଦେଲେ ମାଇଁ । ମୁଁ ପିଢ଼ା ଟାଣି ନେଇ ବସିଲି । ମୁଁ ବସିଲାପରେ ମାଇଁଙ୍କର ହଠାତ ବୋଧେ କ'ଣ ମନେ ପଡ଼ିଗଲା । ପଚାରିଲେ –

'ହାତ ଗୋଡ଼ ଧୋଇଛୁ ତ ?'

'ହଁ, ଆଗ ସେ କାମ ସାରି ଦେଇଛି ନାଁ ।'

'ଭଲ କରିଛୁ । ନ ହେଲେ ତୋ ମାମୁଁ ଏଇନା ଚିଡ଼ି ଥାଆନ୍ତେ ।'

ମୁଁ ତାଙ୍କ କଥା ଶୁଣି ହସିଦେଲି । ମାଇଁ ବି ହସିଲେ । ମାଇଁଙ୍କ ଚେହେରା ଶୁଖିଲା କାଠ ପରି ନିର୍ଜୀବ ଦିଶୁଥିଲା । ଆଗର ସେ ଗୋରା ରଙ୍ଗ ଏବେ ଶେତା ଦିଶୁଥିଲା । ହାତପାପୁଲି ଉପରେ ନୀଳ ରଙ୍ଗର ଶିରା ସବୁ ଉଠି ଉଠି ଉପରକୁ ଦିଶୁଥିଲା ।

ଚାହା ପିଉ ପିଉ ମାଇଁଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଲାଗିଲି ।

'ତୋର ଏବେ ଏମ୍.ଏ. ସରିଲା ତ ?'

'ହଁ ।'

'ଏଇନା ତାହେଲେ କ'ଣ କରୁଛୁ ?'

'କଲେଜରେ ଚାକିରୀ କରୁଛି ।'

'ଭଲ, ଭଲ ! ଏମିତି ଆଗକୁ ଆଗକୁ ଯାଆ । ଆହୁରି ବଡ଼ ହୋ । ସମସ୍ତଙ୍କ ନାଁ ରଖ ।'

ଏତିକି କହିସାରି ମାଇଁ ଧୂଆଁରେ ଲାଲ ହୋଇଯାଇଥିବା ତାଙ୍କ ଆଖିକୁ ଲୁଗା କାନିରେ ପୋଛି ଗୋଟିଏ ଦୀର୍ଘ ନିଶ୍ୱାସ ନେଲେ । ତାଙ୍କର ଯଦି ପୁଅଟିଏ ଥାଆନ୍ତା ଏବେ ସେ ଠିକ ମୋରି ବୟସର ହୋଇ ଥାଆନ୍ତା । ପାଠଶାଠ ପଢ଼ି ଏବେ ମୋରି ଭଳି କେଉଁଠି ଚାକିରୀ ବାକିରୀ କରି ଥାଆନ୍ତା । ମାଇଁ ହୁଏ ତ ମନେ ମନେ ଏଇୟା ଭାବୁଥିବେ ବୋଲି ମୋତେ ଲାଗୁଥିଲା ।

*

ଉପରଓଳି ହାତରେ ଟର୍ଚ୍ଚ ଧରି ବାହାରିଲି । ମାଙ୍କୁ କହିଲି, 'ଯାଉଛି ଟିକେ ବୁଲାବୁଲି କରି ଆସିବି ।'

'ହଉ ଯାଆ । କିନ୍ତୁ ଯିବୁ କୁଆଡ଼େ ?'

'ଯାଉଛି ମନ୍ଦିର ଆଡ଼ ହୋଇ ଆସିବି ।'

"ଯିବୁ ଯଦି ଯାଆ, କିନ୍ତୁ ହାତରେ ବାଡ଼ି ଖଣ୍ଡେ ନେଇଯା ।'

'କାହିଁକି ?'

'ଆରେ ଚତୁର୍ମାସ ସରିଛି ଏବେ । ଚାରିଆଡ଼େ ପାଣି କାଦୁଅ । ଜୀବ ଜନ୍ତୁ ସବୁଆଡ଼େ ବାହାରୁଛନ୍ତି !'

ମୁଁ ବାଡ଼ିଟିଏ ହାତରେ ଧରି ବାହାରିଲି । ଚାଉଳ କୁଲା ଧରି ମାଇଁ ଚାଉଳ ପାଛୁଡ଼ିବା ପାଇଁ ରୋଷେଇ ଘରର ଝରକାତଳକୁ ବସି ପଡ଼ିଲେ ।

ବାହାରକୁ ଯାଉ ଯାଉ କହିଲି,

'ମାଇଁ, ତୁମେ ଚାଲୁନ ମୋ ସହିତ !'

'ନାଇଁରେ ବାବା !'

'କାହିଁକି ?'

'କର୍ମ ତ ପୋଡ଼ିଯାଇଛି ଆମର, ଆଉ ଯିବି କୁଆଡ଼େ ?'

ମାଇଁ ପୁଣି ଗୋଟିଏ ଦୀର୍ଘ ନିଶ୍ୱାସ ନେଇ କୁଲା ଉପରକୁ ଦୃଷ୍ଟି ଫେରେଇଲେ । ବାହାରକୁ ଆସିଲି ମୁଁ । ଆଠଦଶ ଜଣ ମୁଲିଆଙ୍କ ସହିତ ମାମୁଁ ନିଜେ କଟୁରୀ ଧରି ନଡ଼ିଆରୁ କତା ଛଡ଼ାଉଥିଲେ । ସେମାନେ ସମସ୍ତେ ତାଙ୍କ କାମ ଭିତରେ ବୁଡ଼ିଯାଇଥିଲେ ।

'କୁଣିଆ କିଏ କି ?' ସେଇମାନଙ୍କ ଭିତରୁ କିଏ ଜଣେ ପଚାରିଲା ।

'ମୋ ଭଣଜା –', ନଡ଼ିଆ ଛଡ଼ଉ ଛଡ଼ଉ ମାମୁଁ ଏତିକି ମାତ୍ର କହିଲେ ।

'ମୁମ୍ୱାଇ ବାଲା ?'

'ହଁ !'

'ମାମୁଁ! ମୁଁ ମନ୍ଦିର ଯାଉଛି ।' ମୁଁ ଏତିକି କହିଲି, କିନ୍ତୁ ମାମୁଁ ସେ କଥା ଶୁଣି 'ହୁଁ' ସୁଦ୍ଧା କହିଲେନି । ମୋତେ ଟିକେ ଅଡୁଆ ଲାଗିଲା ।

'ନଡ଼ିଆ ଗୋଟାଏ ହାତରେ ନେଇ ଯା ।' ଆସ୍ତେ କରି ମାମୁଁ କହିଲେ । ତାଙ୍କ କଥା ଶୁଣି ବି ନ ଶୁଣିଲା ପରି ମୁଁ ଆଗକୁ ବଢ଼ିଗଲି ।

'ହୋ ବାବୁ -' ଗୋଟାଏ ଲୋକ ପାଟିକରି ଡ଼ାକିଲା ପଛରୁ । ନଡ଼ିଆ ଗୋଟିଏ ହାତରେ ଧରି ଦୌଡ଼ି ଆସିଲା । 'ଠାକୁରଙ୍କ ପାଖରେ ଦେଇଦେବ ।' କହି ମୋ ହାତରେ ନଡ଼ିଆଟି ଧରେଇ ଦେଲା ।

ନଡ଼ିଆ ନେଇ ମୁଁ ମନ୍ଦିର ଆଡ଼େ ଚାଲିଲି ।

ମନ୍ଦିରରେ ପହଞ୍ଚି ଠାକୁରଙ୍କ ସାମ୍ନାରେ ନଡ଼ିଆଟିକୁ ରଖିଦେଲି । ନାରାୟଣ ନନା ଠାକୁରଙ୍କ ପାଖରେ ଭୋଗ ଲଗେଇସାରି ମୋ ହାତରେ ଚରଣାମୃତ ଦେଲେ । ମୁଁ ସେ ପାଦୁକ ପାଇ ମୁଣ୍ଡରେ ହାତ ଲଗାଇଲି । ନନା ତାପରେ ମତେ ମାଆ ବିଷୟରେ ପଚାରିଲେ କେତେ କଥା ।

ମନ୍ଦିର ଭିତରେ ଗମ୍ଭୀର ଅନ୍ଧାରିଆ ଦିଶୁଥିଲା । ତା' ଭିତରେ ଦୁଇଟି ଉଠାଦୀପ ଜଳୁଥିଲା । ସେଇ ଦୀପର ଆଲୁଅରେ ଠାକୁରଙ୍କ ଉପରେ ଲାଗିଥିବା ରୁପାର ଚକ୍ଷୁ, ଚିତା ଏବଂ ନିଶ ଟିକେ ସ୍ପଷ୍ଟଭାବେ ଦିଶୁଥିଲା । ସେତକ ବାଦଦେଲେ ଆଉ ପ୍ରାୟ କିଛି ଦେଖାଯାଉ ନଥିଲା ।

'ଆରେ, ମାଆ ଭଲ ଅଛି ତ ?' ସେଇ ଅନ୍ଧାର ଭିତରୁ ଜଣେ ସ୍ତ୍ରୀ ଲୋକଙ୍କର ସ୍ୱର ଶୁଭିଲା ।

'ହଁ ।' ମୁଁ ଉତ୍ତର ଦେଲି । କିନ୍ତୁ ଅନ୍ଧାର ଭିତରୁ ସେ ପ୍ରଶ୍ନ କିଏ କରିଥିଲା ମୁଁ ଜାଣିପାରିଲିନି । ହାତରେ ଥିବା ଟର୍ଚ୍ଚ ଜଳେଇ ମୁଁ ଭିତରକୁ ଲକ୍ଷ୍ୟ କଲି ଭିତରେ ଜଣେ ବୟସ୍କା ସ୍ତ୍ରୀ ଲୋକ ଝାଡ଼ ଦୀପଟିଏ ପାଖରେ ବସି ସେଥିରେ ବତୀ ସଜେଇ ରଖୁଥିଲେ ।

'କିଏ ?' ମୁଁ ନାରାୟଣ ନନାଙ୍କୁ ଲକ୍ଷ୍ୟ କରି ପଚାରିଲି ।

'କଲ୍ୟାଣୀ । ମନ୍ଦିରର ଦାସୀ, ଦେବଦାସୀ ।'

କଲ୍ୟାଣୀ ହସିଲା । ତା' ହସ ମନ୍ଦିର ଭିତରେ ଘଣ୍ଟି ବାଜିଲା ପରି ଶୁଭିଲା ।

'ଆରେ, ତୁ ବାବୁଲନାଥ ଟି ?'

'ହଁ ।'

'ତୁ ମୋତେ ଚିହ୍ନି ପାରିବୁନିରେ ! ତୋ ମାଆ ମୋତେ ଚିହ୍ନେ । ତା' ଆଗରେ ତୁ ଖାଲି କଲ୍ୟାଣୀ ଦାସୀ ବୋଲି କହିଲେ, ସେ ସାଙ୍ଗେ ସାଙ୍ଗେ ଜାଣିପାରିବ । ଏବେ ତ ସେ ପୁରାପୁରି ମୁଁଯାଇବାଲି ହୋଇଗଲାଣି । ଆରେ, ସେ ସେମିତି ଆଗଭଳି ହସୁଛି ନାଁ ନାହିଁ ?'

କଲ୍ୟାଣୀ ଏତିକି କହିଦେଇ ପୁଣି ଥରେ ହସିଦେଲା । କାନ୍ଥ ଧରି ଧରି ସେ ତା'ପରେ ବାହାରକୁ ଆସିଲା ।

'ତୋ ମାଆ ଯେମିତି ହସକୁରୀ ସେମିତି ଚାବୁରୀ । ଭାଇ ଯେତେବେଳେ ଏମିତିଆ ଆଉ ଭଉଣୀ ବା ନହେବ...'

ଏତିକି କହିଦେଇ ସେ ତା'ର ତେଲ ହାତକୁ କାନ୍ଥରେ ପୋଛିଲା ।

ମୋତେ ଆଶ୍ଚର୍ଯ୍ୟ ଲାଗିଲା ତା' କଥା ଶୁଣି । ଭାଇ ଏମିତିଆ... ! ମାଆ ଚାବୁର ଚାବୁର ହୋଇ ଗପିବାକୁ ଭଲପାଏ, ସବୁ କଥାରେ ହସେ । ଏ କଥା ସତ । କିନ୍ତୁ ଏମିତିକା ଭାଇର ଭଉଣୀ....ମାନେ କେମିତି ? ମାମୁଁ ତ ମୋଟେ କଥା କହିବାକୁ ଭଲ ପାଆନ୍ତିନି । ତାଙ୍କୁ ହସିବାର ବି ମୁଁ କେବେ ଦେଖିନାହିଁ । ହଁ, ବୋଧେ ଅଲଗା କ'ଣ ଭାବି କଲ୍ୟାଣୀ ସେମିତି କହିଦେଲା କି କ'ଣ !

ମୁଁ ଘଣ୍ଟିରେ ହାତ ମାରିଦେଇ ଯାଇ ସତରଞ୍ଜି ଉପରେ ବସିଲି । ମୁଖଶାଳାର ଗୋଟିଏ କଡ଼କୁ । ବଢ଼ିଆ ପବନ ହେଉଥିଲା ସେଠି । ମନ୍ଦିର ଭିତରେ ଫୁଲ, ଚନ୍ଦନ, ଉଦ୍‌ବତୀ, ଧୂପ, ଜଳୁଥିବା ସଳିତା - ଏ ସବୁର ମିଶ୍ରଣରେ ଏକ ଅଦ୍ଭୁତ ପ୍ରକାରର ବାସ୍ନା ଆସୁଥିଲା ପବନ ସହିତ । ସେଇଠି ସେମିତି ରହିଯିବା ପାଇଁ ମନ ହେଉଥିଲା ।

କାହାର ପାଦଶବ୍ଦ ଶୁଣି ମୁଁ ମନ୍ଦିରର କବାଟ ପାଖକୁ ଅନେଇଲି । ଗୋଟାଏ ରୂପାର ଥାଳି ହାତରେ ଧରି କଲ୍ୟାଣୀ ଆସୁଥିଲା । ଗୋଟାଏ ଆଖିକୁ ନ ଦିଶିବା ପରି ମୁହଁ ବଙ୍କା କରି ଆସୁଥିଲା ।

ପାହାଚରେ ଓହ୍ଲେଇବା ବେଳକୁ ଟଳମଳ ହେଲା ଭଳି ଲାଗୁଥିଲା । ଆଗକୁ ଆସି ଥାଳିଟି ସେ ମୋରି ଆଗରେ ରଖିଲା । ସେ ରୂପାଥାଳିରେ ଗୋଟିଏ ପାନ ସହିତ ତ୍ରିଶାଖା ବେଲପତ୍ରଟିଏ ଥିଲା ।

'ଇଏ କଣ ?' ମୁଁ ଟିକେ ହଡ଼ବଡ଼େଇ ଯାଇ ପଚାରିଲି ।

'ଇଏ ଆମର ଧର୍ମ । ବଞ୍ଚିଥିବା ଯାଏ ଏମିତି କରୁଥିବୁ ।'

ମୁଁ ଡ଼ରି ଡ଼ରି ପାନ ଆଣି ପାଟିରେ ପୁରେଇଲି । ପକେଟରୁ ଅଧୁଲି ଟିଏ ବାହାର କରି ଥାଳିରେ ଥୋଇଦେଲି । ଭାବିଲି, ଏଥରକ କଲ୍ୟାଣୀ ଥାଳି ନେଇ ତା' ବାଟରେ ଚାଲିଯିବ । ସେ କିନ୍ତୁ ସେମିତି ଛିଡ଼ା ହୋଇ ରହିଥିଲା ସେଇ ଯାଗାରେ ।

'ତୁମେ ଭାଇ ଭଉଣୀ କେତେଜଣ ?'

'ଦୁଇଜଣ ।'

'ବାହାଘର ହେଲାଣି ?'

'ଉଭଣୀର ସରିଛି ।'

'ଭଲ ଭଲ !'

ସାମ୍ନାରେ ଥିବା ଝାଡ଼ଦୀପକୁ ଚାହିଁ କଲ୍ୟାଣୀ ସେମିତି ଛିଡ଼ା ହୋଇ ରହିଲା । ନିଜକୁ ସେ ଦେବଦାସୀ ବୋଲି କହିଥିଲା । କିନ୍ତୁ ମୁମ୍ବାଇର କୌଣସି ବଙ୍ଗଳା ଭିତରୁ ଯଦି ସେ ବାହାରି ପଡ଼େ, ପୁରୁଣା ଖାନଦାନୀ ଘର ଝିଅ କି ବୋହୂ ବୋଲି ତାକୁ ଯେ କେହି ବି କହିଦେବ । ଶରୀର ସାମାନ୍ୟ ସ୍ଥୁଳ ହୋଇଥିଲେ ବି ଗଢ଼ଣ ଏବେ ସୁଦ୍ଧା ଖୁବ ସୁନ୍ଦର ଦିଶୁଛି । ଗୋରା ଦେହରେ ପେଟ ପାଖରେ ପଣତକୁ ଭିଡ଼ି ଖୋସି ଦେଇଥିଲା । ପ୍ରଶସ୍ତ କପାଳରେ ସିନ୍ଦୁରର ଲମ୍ବା ଗାର । ଖଣ୍ଡାଧାର ପରି ନାକରେ ଚମକୁ ଥିଲା ହୀରା ଭଳି ଚକମକ କରୁଥିବା ପଥରଟିଏ । ନିଶ୍ଚିତଭାବରେ ସେଇଟି ହୀରା ହୋଇନଥିବ । ହାତରେ ସୁନା ଚୁଡ଼ି ସହିତ କଙ୍କଣ । ତା ସହିତ ପୁଣି ସବୁଜ ରଙ୍ଗର କାଚ ଚୁଡ଼ି । ମଥା ଉପରେ ଥିବା ପଣତକୁ ସଜାଡ଼ିବା ପାଇଁ ହାତ ଉପର କଲାବେଳକୁ କାଚ ଚୁଡ଼ି ସହ ସୁନାଚୁଡ଼ି ବାଜି ଅପୂର୍ବ ଝଙ୍କାର ସୃଷ୍ଟି କରୁଥିଲା । ନୀଳ ବୁଟି ଥିବା ସଫା ଧଳା ଶାଢ଼ିଟିଏ ଦେହକୁ ଆବୃତ କରିଥିଲା । ତା ସାଥିରେ ସିଲ୍‌କ ବ୍ଲାଉଜ୍ ଆଗରେ ବ୍ଲାଉଜର ଡ଼ୋରର ଗଣ୍ଠି ପଡ଼ିଥିଲା । ପତଳା ଶାଢ଼ୀ ଆସ୍ତରଣ ତଳୁ ବ୍ଲାଉଜର ଡ଼ୋରର ଗଣ୍ଠି ବାହାରକୁ ଦିଶି ଯାଉଥିଲା । ହସିଲାବେଳେ ସଫା ଧଳା ଦାନ୍ତ ଗୁଡ଼ିକର ସନ୍ଧି ଭିତରେ ପାନ ଖାଉଥିବାର ଲାଲ ଚିହ୍ନ ସ୍ପଷ୍ଟ ଦେଖାଯାଉଥିଲା ।

କଲ୍ୟାଣୀର ବୟସ ପଚାଶରୁ ପଞ୍ଚାବନ ଭିତରେ ହୋଇଥିବ । କିନ୍ତୁ ତାକୁ ଦେଖିଲେ ବୟସ ଜଣା ପଡୁନଥିଲା । କଥା କହିବା ବେଳେ କିମ୍ବା ମୁଣ୍ଡ ଟେକି କୁଆଡ଼େ ଚାହିଁଲାବେଳେ ବ୍ଲାଉଜର ଗଣ୍ଠି ଉପରକୁ ହାତ ଚାଲିଯିବା ବୋଧେ ତା'ର ଅଭ୍ୟାସ ଥିଲା । ତା ଆଡ଼କୁ ସିଧା ଚାହିଁବା ବି କଷ୍ଟକର ଥିଲା । କାରଣ ବୟସରେ ସେ ମୋ ମାଆ ସାଙ୍ଗର । ତଥାପି ବି ତା' ମୁହଁକୁ ସିଧା ଚାହିଁବାକୁ ସଂକୋଚ ଲାଗୁଥିଲା । କଣେଇ କଣେଇ ଲୁଚିଛପି ଚାହିଁଲାବେଳେ ଲାଗୁଥିଲା ସିଏ ବୋଧେ କୁଆଁର ପୁନେଇ ଦିନ ଜନ୍ମ ହୋଇଥିଲା । ସେଦିନ ସେଇ ପୁନେଇ ଜହ୍ନର ରୁପେଲି ଜୋଛନାରେ ତାକୁ ବୁଡ଼େଇ ଦେଇ ପୁଣି ଉଠେଇ ଆଣିଛନ୍ତି କି କ'ଣ । ସେଇଥିପାଇଁ

ଶରୀର ସହ ବୃତ୍ତି — ଉଭୟରେ ହୋଇଛି ସେ ସୌଭାଗ୍ୟବତୀ । ସୁଖ ପାଇଛି ଯେତେ ବୋଧହୁଏ ଦେଇଛି ବି ସେତିକି । ଅନେକ ସମୟ ଯାଏ ମୁଁ କିଛି ନ କହି ସେମିତି ଚୁପ ହୋଇ ରହିଲି ।

ସେ ସେମିତି ବ୍ଲାଉଜ ଗଣ୍ଠି ଉପରେ ହାତ ବୁଲେଇ ବୁଲେଇ କହିଲା, 'କ'ଣ କଥା କହିବାକୁ ଭଲ ଲାଗେନି କି ? ଏ ଗୁଣଟି ତା' ହେଲେ ଆସିଲା କେଉଁଠୁ ? ବାପାଙ୍କ ପାଖରୁ ?'

ତଳକୁ ମୁହଁକରି ମୁଁ ହସିଦେଲି ।

'ମାଆର ତ ସବୁବେଳେ ଖିଲି ଖିଲି ହସ । ମାମୁଁଙ୍କର ବି –'

ମୁଁ ପୁଣିଥରେ ଚମକି ପଡ଼ିଲି । ମାମୁଁ ପୁଣି ହସ ? ଯେତିକି ଦରକାର ମାମୁଁ ସେତିକି କଥା ସୁଦ୍ଧା କହନ୍ତିନି !

'ଛୋଟ ବେଳୁ ମୋର ତୋ ମାମୁଁଘରେ ହିଁ ଜୀବନ କଟିଛି । ଅଜା ତୋର ଖୁବ ସ୍ନେହରେ ଆମକୁ ବଢ଼େଇ ଥିଲେ । ଅଜା ମାନେ କିଏ ବୁଝିଲୁ ତ ? ତୋ ମାମୁଁଙ୍କ ବାପା ! ଦେବତୁଲ୍ୟ ଲୋକ ଥିଲେ ସେ । ତୋ ମାମୁଁ ବି ଠିକ ତାଙ୍କରି ଗୁଣ ସବୁ ଆଣିଛନ୍ତି । ତୁ ବୋଧେ ଅଜାଙ୍କୁ ତୋର ଦେଖି ନଥିବୁ, ନୁହେଁ ?'

'ନାଁ, ମୁଁ ଅଜାଙ୍କୁ ଦେଖିନାହିଁ ।'

' ତୋ ମାଆର ବାହାଘର ହେବାର ମାତ୍ର ଦୁଇବର୍ଷ ପରେ ସେ ଚାଲିଗଲେ ଏ ଦୁନିଆ ଛାଡ଼ି ।'

ଝାଡ଼ଦୀପ ଉପରେ ଥିବା ପାରାଯୋଡ଼ିକୁ ଅନେଇ ଅନେଇ ସେ ଆଖି ବୁଜିଲା । ଅଜା କଥା ମନେ ପଡ଼ିଯିବାରୁ ତାର ମନଦୁଃଖ ହୋଇଯାଇଥିଲା ବୋଧେ । ଦେବଦାସୀର ପୁଣି ଦୁଃଖ କ'ଣ ? କେଜାଣି, କିଛି ଦୁଃଖ ହୁଏତ ଥିବ !

'ତୋ ମାଆ ବାହାଘର ବେଳେ ମୁଁ ପରା ତା' ପାଖେ ପାଖେ ଥିଲି । ତିନି ଦିନ ଧରି ବାହାଘର ଉତ୍ସବ ଚାଲିଥିଲା । ଖୁବ ଜାକଯମକରେ ବାହାଘର ହୋଇଥିଲା । କି ଖାଇବା ହୋଇଥିଲା ! ଗାଁଟା ଯାକର ଲୋକ ସମସ୍ତେ ଖାଇଥିଲେ । ପାଲିଙ୍କିରେ ବସି ବର ଆସିଥିଲା ବରଯାତ୍ରୀଙ୍କ ଗହଳି ଭିତରେ । ତୋ ମାଆର ବୟସ ସେତେବେଳେ ଖୁବ ହେଲେ ହେଲେ ସାତ ହେଇଥିବ । କି ସୁନ୍ଦର ଦେଖାଯାଉଥିଲା ସେ !

'ତା' ମୁଣ୍ଡ ବାନ୍ଧିଦେବା, ଗହଣା ପିନ୍ଧେଇଦେବା, ଶାଢ଼ୀ ପିନ୍ଧେଇବା ସବୁ କାମ ମୋରି ଉପରେ ଥିଲା । ସେ ବାହାଘରରେ ତୋ ଅଜା ମୋ ପାଇଁ କରିଥିଲେ

ଜରିଧଡ଼ି ଦିଆ ପୈଠଣୀ ପାଟଶାଢ଼ୀଟିଏ । କେତେ ମୁଁ ପିନ୍ଧିଛି ସେ ଶାଢ଼ୀକୁ । ଏବେ କିନ୍ତୁ ପୋରିହା ହୋଇଗଲାଣି । ହଁ ମ ହଉ । ଏବେ ତ ପୁଣି ତୋ ବାହାଘରରେ ପିନ୍ଧିବି । ଭୁଲିବୁନିରେ, ମାଆକୁ ମନେକରି କହିବୁ ମୋ କଥା ।'

ବହୁତ ବେଳଯାଏ ସେ ହିଁ ଗପି ଚାଲିଥିଲା ପୂଜା ବେଳେ ଘଣ୍ଟି ବାଜିଲା ପରି । ଗପ ସରିଯିବା ପରେ ଖୁବ ସଞ୍ଜଣାରେ ମୋ ଆଗରୁ ଥାଳିଟି ଉଠେଇନେଇ ମନ୍ଦିର ଭିତରକୁ ଚାଲିଗଲା । ମୁଁ ତା'ର ଯିବାବାଟକୁ ଚାହିଁ ରହିଥିଲି । ପଛରୁ ଦେଖିଲେ ତାକୁ ପଚାଶ ଟପିଛି ବୋଲି କେହି କହିବେନି । ଗୋରା ଗୋରା ପାଦରେ ଶିର ଦୁଇଟି ଯାହା ଉପରକୁ ଦିଶି ଯାଉଥିଲା । ଥାଳିରୁ ଅଧୁଲିଟି ନେଇ କାନ ପାଖରେ ଖୋସିଦେଲା ଓ ଭିତରକୁ ଗଲା । ମଥାର କବରୀରୁ ବଉଳମାଳ ତଳକୁ ଝୁଲି ପଡ଼ିଥିଲା ।

କିଛି ସମୟ ଯାଏ ମୁଁ ସେମିତି ସେଇଠି ବସିଲି । ମାଆର ବାହାଘର ହେଲାବେଳେ କଲ୍ୟାଣୀର ବି ତ ବାହାଘର ବୟସ ହୋଇଥିବ । ସେ ମାଆର ସମବୟସ୍କା କିମ୍ବା ଅଳ୍ପ କିଛି ବଡ଼ ହୋଇଥିବ । କିନ୍ତୁ ମାଆର ବାହାଘର ବେଳେ ତା ପାଖେ ପାଖେ ରହି ତା'ର ସବୁ କାମ କରି ସେ ଖୁସି ଥିଲା । ଅଜା ଦେଇଥିବା ପୈଠଣୀ ଶାଢ଼ୀ କଥା ସେ କେତେ ଗର୍ବର ସହିତ କହୁଛି । କିନ୍ତୁ ତା'ର କ'ଣ କେବେ ବି ମନ ହୋଇନଥିବ ବାହାହବା ପାଇଁ । ମାଆପରି ବାହାହୋଇ ଘର ସଂସାର କରିବା କଥା ତା' ମନରେ କ'ଣ କେବେ ଆସୁନଥିବ ? ନାଁ, ତା କଥାରୁ ସେମିତି କିଛି ଜଣାପଡ଼ିଲାନି । ବରଂ ଆଜିକାଲିର ଝିଅ ଦେବଦାସୀ ଧର୍ମକୁ ଛାଡ଼ି ବିବାହ କରି ଯାଉଛନ୍ତି ବୋଲି ଅଭିଯୋଗ ତା' ଆତ୍ମା ଭିତରୁ ଆସିବା ପରି ଲାଗୁଥିଲା ତା କଥା ଶୁଣିବା ବେଳେ । କେମିତିଆ ମନ ତା'ର କେଜାଣି । ସବୁବେଳେ ଠାକୁର ଠାକୁର ହୋଇ କ'ଣ ଆଉ ମିଳିବ ?

ଘରକୁ ଯିବାପାଇଁ ଉଠିବା ବେଳକୁ ସୂର୍ଯ୍ୟ ପଶ୍ଚିମରେ ଅସ୍ତହୋଇ ସାରିଥିଲେ ଅନେକ ବେଳ ଆଗରୁ ।

ବାଡ଼ି ଠକ ଠକ କରି ମୁଁ ଚାଲିଲି । ଚାରି ଛ' ପାଦ ଆଗକୁ ଯାଇଛି କି ନାହିଁ ଲାଗିଲା ଯେମିତି ମୋ ପଛରେ କିଏ ଆସୁଛି । ପଛକୁ ବୁଲି ଚାହିଁଲି । କଲ୍ୟାଣୀ ହିଁ ଆସୁଥିଲା ।

'କ'ଣ ଘରକୁ ବାହାରିଲୁ ?' ସେ ମୋତେ ପଚାରିଲା ।

'ହଁ ।'

'କେତେଦିନ ରହିବୁ ?'

'ଦଶ ପନ୍ଦର ଦିନ ରହିବି ବୋଲି ଭାବୁଛି । ଦୀପାବଳୀ ଏଇଠି କରି ଯିବି ।'

'ଗଲାବେଳେ ମୋତେ କହିକରି ଯିବୁ । ମାଆକୁ ଟିକେ ଦେଖିବା ପାଇଁ ମୋର ବହୁତ ଇଚ୍ଛା । ତା'ର ମୋର, ପିଲାଦିନର ସାଙ୍ଗ ଆମେ । ଏକାଠି ଖେଳିଛୁ, ଏକାଠି ବଢ଼ିଛୁ ।'

'ହଁ, ନିଶ୍ଚୟ କହିବି ଗଲାବେଳେ ।'

ସେମିତି ଗପି ଗପି ଯାଉ ଯାଉ ବାଟରେ ଗୋଟିଏ ଘର ପଡ଼ିଲା । ମନ୍ଦିରର ହତାକୁ ଲାଗି ଟାଇଲ ଛପରର ଘରଟିଏ । ଘର ଚାରିପଟେ ବାରି । ଦୁଇଟା ବାଉଁଶ ଦିଆ ହୋଇ ଧଡ଼ା ହୋଇଥିଲା । ବାଉଁଶ ଦୁଇଟା ଭିତରେ ଗଳି ଭିତରକୁ ଗଲା ସେ । କହିଲା, 'ଏଇ ଆମ ଘର ।'

ଅଗଣା ଭିତରେ ଜୁଇଗଛର ବିରାଟ ବୁଦା । ସେଇ ବୁଦା କଡ଼ରେ ଛିଡ଼ାହୋଇ ଝିଅଟିଏ ଜୁଇଫୁଲ ତୋଳୁଥିଲା ବୋଧେ । ଶାଢ଼ୀ ପଣତକୁ ଅଣ୍ଟାରେ ଭିଡ଼ି ସେଥିରେ ଗୋଟିଏ ଖୋପ କରି ଫୁଲ କଢ଼ ସବୁ ରଖୁଥିଲା । ଗଛର ପତ୍ର ଭିତରୁ ତା' ଦେହର କିଛି ଅଂଶ ବାହାରକୁ ଦେଖାଯାଉଥିଲା । କିନ୍ତୁ ମୁହଁ ଦିଶୁନଥିଲା ।

'ମାନୁ ଲୋ !' କଲ୍ୟାଣୀ ଡାକ ମାରିଲା ।

'କ'ଣ ?' ଏତିକି କହି ଝିଅଟି ଆଗକୁ ବାହାରି ଆସିଲା ।

'ଇଏ ମୋ ଝିଅ ।'

'ଓଃ !'

ମୁଁ ତା' ଆଡ଼େ ସିଧା ଚାହିଁ ପାରୁନଥିଲି ।

'ମାଇଁ ଭଲ ଅଛି ତ ?'

'ହଁ, ଭଲ ଅଛନ୍ତି ।'

'ତା ଦେହ ଏବେ ପ୍ରାୟ ଭଲ ରହୁନି । କି ଲମ୍ବା ଚଉଡା ଚେହେରା ! ଏବେ ଶୁଖି କଣ୍ଟା ହୋଇଗଲାଣି । ପୁଅ ପିଲା ହେଲେ ନାହିଁ ବୋଲି ତାର ଦୁଃଖ । କିନ୍ତୁ ସେଥିରେ ତା'ର ବା କ'ଣ ଦୋଷ ଅଛି ? ମାମୁଁଙ୍କ ପରେ ଇଷ୍ଟେଟର ମାଲିକ ତ ପୁଣି କିଏ ଜଣେ ହେବା ଦରକାର ! ପୂର୍ବ ପୁରୁଷର ଜମିବାଡ଼ି ସବୁ କ'ଣ ସେମିତି ଭୂତ ଖାଇବା ପାଇଁ ଛାଡ଼ିଦେବେ ? ଛାଡ଼ ସେ କଥା । ସେ ଭଲ ଅଛି ତ ?'

'ହଁ ।'

'ଭଲରେ ଥାଉରେ ବାବା !' ଟିକେ ଭାରି ଗଳାରେ କହିଲା କଲ୍ୟାଣୀ ।

'ମାଇଁଙ୍କୁ ଟିକେ ଦେଖିବି ଦେଖିବି ବୋଲି ଭାରି ମନ ହଉଛି ଯେ, ଏ ଦେଉଳ କାମରୁ ସମୟ କୋଉଠି ମିଳୁଛି ମୋତେ ? ଯାକୁ – ଏ ମାନୁକୁ ଯାଆ ବୋଲି କହୁଛି ଯେ ଦେଖେ କେବେ ଯାଉଛି ସେ !' କଲ୍ୟାଣୀ ଭିତରକୁ ଚାଲିଗଲା ଏତକ କହିଦେଇ ।

ମୁଁ ରାସ୍ତାରେ ଆଗକୁ ଚାଲିଲି । ଘରେ ପହଞ୍ଚିଲା ବେଳକୁ ସଂଜ ଦିଆ ସରିଯାଇଥିଲା । ଲୁଗା ବଦଳେଇ ସାରି ମାମୁଁ ଜରିଧଡ଼ି ଥିବା ପଗଡ଼ି ମୁଣ୍ଡରେ ବାନ୍ଧୁଥିଲେ ।

'କୁଆଡ଼େ ବାହାରିଛ ?'

'ମନ୍ଦିର ଆଡ଼େ ।'

'ମୁଁ ଆସିବି କି ସାଙ୍ଗରେ ?'

'ନାଁ, ନାଁ, ଦରକାର ନାହିଁ ।'

ହାତରେ ବାଡ଼ି ଖଣ୍ଡେ ଧରି ଯୋତା ମଚ ମଚ କରି ମାମୁଁ ବାହାରିଗଲେ । ସେ ବାହାରିଯିବା ପରେ ମାଇଁ ସେଠିକୁ ଆସିଲେ । ଥକିଗଲା ପରି ପିଣ୍ଡା ଉପରେ ପଡ଼ିଥିବା ବେଞ୍ଚ ଉପରେ ବସି ପଡ଼ିଲେ ।

'ବସରେ ବାବୁଲ୍ !'

ମୁଁ ବି ତକିଆ ଗୋଟିଏ ପିଠି ପଟେ ଦେଇ ବସିଗଲି ।

ମାଇଁ କିଛି କହୁ ନଥିଲେ । ମୁଁ ବି କ'ଣ କହିବି ଜାଣି ପାରୁ ନଥିଲି । ତଥାପି କଥା ଆରମ୍ଭ କରିବା ପାଇଁ କହିଲି, 'ମନ୍ଦିରରେ କଲ୍ୟାଣୀକୁ ଦେଖିଲି ।'

ମୋତେ ଲାଗୁଥିଲା ମାଇଁ ପଚାରିବେ ସେ କ'ଣ ସବୁ କହୁଥିଲା ବୋଲି । କିନ୍ତୁ ମାଇଁ କିଛି କହିଲେନି । ଗୋଟିଏ ଆଡ଼କୁ ଚାହିଁ ରହିଥିଲେ ।

'ମାଆ ବାହାଘର ବେଳର କଥା ସବୁ ଗପୁଥିଲା ।'

' କିଏ ?'

'କଲ୍ୟାଣୀ ।'

ମାଇଁ ପୁଣି ଚୁପ ହୋଇଗଲେ ।

'ମାଇଁ, କଲ୍ୟାଣୀକୁ କେତେ ବୟସ ହେବ ?'

'ମୁଁ ଚୁଲିରେ କାଠ ପକେଇ ଦେଇ ଆସେ । ତୁ ବସିଥା ।'

ମାଇଁ ଉଠିଗଲେ ଭିତରକୁ ।

ମୋତେ ସେଠିକାର ଚୁପଚାପ ଉଦାସ ବାତାବରଣ ଆଦୌ ଭଲ ଲାଗୁନଥିଲା । ଏଡ଼େ ବଡ଼ ଘରେ କିଛି କଥା ନ କହି ରହିବା ଖୁବ କଷ୍ଟଦାୟକ ଲାଗୁଥିଲା । ପାଟି କରି ଗପ କରିବାକୁ, ଜୋର ଜୋରରେ ହସିବାକୁ ଖୁବ ମନ ହେଉଥିଲା । କିନ୍ତୁ ମାଇଁ ତ ଉଠି ଭିତରକୁ ଚାଲିଯାଇଥିଲେ । ମୁଁ ବି ଉଠିଲି । ବାରଣ୍ଡାର ଗୋଟିଏ ପାଖରୁ ଆର ପାଖ ଯାଏ ଏପଟ ସେପଟ ହେବାକୁ ଲାଗିଲି । ସେଇ ବାରଣ୍ଡାର ଗୋଟିଏ କ'ଣରେ ଗୋଟିଏ ବସ୍ତା ଥୁଆ ହୋଇଥିଲା । ସେଥିରେ କେବଳ ନଡ଼ିଆ ଥିଲା । ପାଖାପାଖି ପଚାଶଟି ହେବ । ବସ୍ତାର ଗୋଟିଏ ପାଖରେ ମୋ ନାଁ ଲେଖା ହୋଇଥିଲା । ମୁମ୍ବାଇରୁ ଆସିଲା ବେଳେ ସେଇଥିରେ ମୁଁ ଫଳ, ମିକ୍ସର, ବିସ୍କୁଟ ଇତ୍ୟାଦି ନେଇ ଆସିଥିଲି । ଭାବିଲି ମାମୁଁ ବୋଧେ ମୋରିପାଇଁ ନଡ଼ିଆ ବାହାର କରି ରଖିଛନ୍ତି । କିନ୍ତୁ ଏବେଠାରୁ ? ଯିବାପାଇଁ ତ ଆହୁରି ଅନେକ ଦିନ ଅଛି । ଏବେଠାରୁ କାହିଁକି ଏ ବସ୍ତା ଭର୍ତ୍ତିକରି ରଖିଦେଲେ ? ପୁଣି ଏମିତି ଖୋଲା ! କିଏ ଯଦି ସେଥିରୁ କିଛିଟା ନେଇଯିବ ?

ମୁଁ ଏମିତି ଭାବୁଥିବା ବେଳେ ମାଇଁ ଘରଭିତରୁ ଆସିଲେ ।

'ଏ ନଡ଼ିଆ କାହାପାଇଁ ରହିଛି ଏଠି ? ପୁଣି ଏମିତି ଖୋଲା ?'

ମାଇଁଙ୍କର ମୋ କଥାପ୍ରତି କୌଣସି ଆଗ୍ରହ ଦେଖାଗଲା ନାହିଁ ।

'ହଁ ମ, ଥାଉ ସେମିତି । କେହି ନେବେନି !' ଏମିତି କହି ସେ ପୁଣି ଆସି ବେଞ୍ଚ ଉପରେ ବସିଲେ ।

'ଆରେ ବାବୁଲ, ଲଖୋବା କୁଆଡ଼େ ଗଲାକି ?'

'ଏଇନା ତ ଏଇପଟେ କୁଆଡ଼େ ବାହାରକୁ ଗଲା ।' ମୁଁ କହିଲି ।

'କାମରେ ତା'ର ଆଉ ଆଦୌ ମନଧ୍ୟାନ ନାହିଁ । ଚୁଲିପାଖରେ କାଠ ନେଇ ରଖିବା ପାଇଁ ତାକୁ ଆଜିକାଲି ଶହେଥର କହିବାକୁ ପଡୁଛି ।'

'ଆଗରୁ ତ ଭଲ କାମ କରୁଥିଲା । ମାଆ ସବୁବେଳେ ତା କାମ କଥା କହି ତାକୁ ପ୍ରଶଂସା କରେ ।'

'ହଁ, ସେ କେବେ ସେମିତି କରୁଥିଲା ।' ମାଇଁ ଆକ୍ରୋଶରେ କହିଲେ, 'ଏବେ ଆଉ ଠିକରେ କିଛି କାମ କରୁନି । ସବୁବେଳେ ଯାଇ ସେଇ ଫୁଲେଇ ପାଖରେ ବସୁଛି, ତାରି ମୁହଁକୁ ଚାହିଁ !'

'କାହାର ?'

'ସେଇ, ଯା' ପଛରେ ପଡ଼ିଯାଇଛି ଜୋକ ଭଳି ଏବେ !'

'ପଛରେ ପଡ଼ିଛି... ?'

'ହଁ, ସେ ଗୋଟାଏ ଚରିତ୍ରହୀନା ସ୍ତ୍ରୀ ଲୋକଟାଏ । ବୟସ ହେଲାଣି ପଇଁତିରିଶ । ସ୍ୱାମୀ ତଡ଼ିଦେଇଛି । ଏ ଲଖେବା ତାକୁ ରଖିଛି ଏବେ । ମଶାଣୀକୁ ଯିବାବେଳକୁ ତା'ର ଏ ହୁନ୍ଦର ବାହାରୁଛି । ବାହା ହେବା ବୟସ ବେଳେ ବାହାଘର ଠିକ କଲାବେଳକୁ ଘର ଛାଡ଼ି ପଳେଇଗଲା । ଏଇନା ଏ ବୁଢ଼ା ବୟସରେ ଏ ନବରଙ୍ଗ । ଘରକାମ ସବୁ ଖଇଚା ହେଉଛି !'

'ଏଇନା ପୁଣି ଲଖୋବା ବାହା କେମିତି ହେଲା ?'

'ଆରେ ବାହାଘର କେଉଁଠି କା'ର ହୋଇଛି ? ଇଏ ତା' ପାଖରେ ଯାଇ ବସା ଉଠା କରୁଛି । ତା'ର ମୁହଁକୁ ଅନେଇ ସେଠି ଘଣ୍ଟା ଘଣ୍ଟା ଧରି ବସୁଛି । ଯେତେବେଳେ ଇଏ ସେଠି ରହୁନି ଗାଁର ଅନ୍ୟ ଲୋକ ବି ସେଠିକୁ ଆସୁଛନ୍ତି । ତାଙ୍କ ଭିତରୁ ଜଣେ ଆରସାହିର ବିଷ୍ଣୁ । ଏବେ ପୁଣି ଆଉରି ଜଣେ ଆସୁଛି । ତା' ନାଁ ଦିଶୁ ଗୋଡ଼କର । ବଡ଼ ଝିଅ ହେଲା ବିଷ୍ଣୁର ଦ୍ୱିତୀୟ ରୂପ । ଏବେ ପୁଅ ହୋଇଛି ଯେ ସେ ପୁରାପୁରି ଗୋଡ଼କରର ନାକ ନକ୍ସା ଛିଣ୍ଡେଇ ଆଣିଛି । ସେମିତି କଳାକୁ କଳା । ପୁଣି ଗୋଡ଼କର ଭଳି ଟେରା । ଆଉ ଏ ଲଖୋବା ମୂର୍ଖ ସେଇ ଛୁଆଙ୍କୁ ନିଜ ଛୁଆଙ୍କ ପରି ଧରି ଥେଇ ଥେଇ ହଉଛି । ଗାଁ ସାରା ସମସ୍ତେ ହସୁଛନ୍ତି । ୟାର କିନ୍ତୁ ସେଥିପ୍ରତି ଆଦୌ ପରୱା ନାହିଁ କି ଲାଜସରମ ବି ନାହିଁ ।'

ଲଖୋବାର ଏ ପୁରାଣ ଶୁଣି ମୋତେ ବି ମଜା ଲାଗୁଥିଲା ।

'ଆଉରି ପୁଣି ଦିନେ ଯଦି ସେଠିକୁ ଯାଇ ନ ପାରିଲା ତ ୟାର ଆଉ ମୁଣ୍ଡ ଠିକ ରହୁନି । ସେ ଛୁଆଙ୍କୁ ଧରି ମଝିରେ ଏଠିକୁ ବି ଚାଲି ଆସିବ ନାଁ ! ବାସ, ସମସ୍ତଙ୍କର ଭୋଜନ ଏଠି । ମୋ ଅଣ୍ଟା ଭାଙ୍ଗିଯାଉ ପଛେ ! ଆଗେ ଲଖୋବା ବିଶ୍ୱାସରେ ମୁଁ ପୁରା ଘର ଛାଡ଼ି ଦେଉଥିଲି । ଏବେ ଆଉ ସେ କଥା ଅଛି କି ? ନଡ଼ିଆ କ'ଣ, ଲଡୁ କ'ଣ, ଚାଉଳ କ'ଣ, ଯାହା ତ ସୁବିଧା ଉପରକୁ ଆସିଲା ଧରିଲା ତ ଚାଲିଲା ସେଠିକି ।'

ସେତିକି ବେଳେ ଲଖୋବା ଆସି ପହଞ୍ଚିଗଲା । ମାଈଁ ଚୁପ ହୋଇଗଲେ ।

'କୁଆଡ଼େ ଯାଇଥିଲୁ କିରେ ?' ମୁଁ ପଚାରିଲି ।

'ଏଇ ଝୁଅାକୁ ଟିକେ ଦେଖିବାକୁ ଯାଉଥିଲି ମ ! ଥରେ ତାଙ୍କ ଉପରେ ଆଖି ନ ପଡ଼ିଲେ ଜମା ଶାନ୍ତି ଲାଗିବନି ।'

'ତା' ହେଲେ ସ୍ତ୍ରୀ ପିଲାଙ୍କୁ ଆଣି ପାଖରେ ରଖୁନୁ ?'

'ସେ ପରା କାହା ଦୁଆରକୁ ଆସିବାକୁ ମୋଟେ ରାଜିହେଉନି ।'

ଏତିକି କହିଦେଇ ଲଖୋବା କାଠ ଆଣିବା ପାଇଁ ପଛ ପଟକୁ ଚାଲିଗଲା । ସେ ଗଲାପରେ ମାଇଁ ଚୁପଚୁପ କରି କହିଲେ, 'ସେ ଏଠିକି କେମିତି ଆସିବ ? ଖାଲି ପେଟ ପାଣି ପାଇଁ ତା'ର ଲଖୋବାକୁ ଲୋଡ଼ା । ଅନ୍ୟ ଧନ୍ଦା ପାଇଁ ବିଷ୍ଣୁ ଅଛି, ଗୋଡ଼କର ଅଛି ! ଏଠିକୁ ଆସିଲେ ସେସବୁ ବେପାର କେମିତି ହେବ ?'

ମାଇଁ ବୋଧେ ଆହୁରି କିଛି କହିଥାଆନ୍ତେ । ସେତିକି ବେଳକୁ ଲଖୋବା କାଠ ନେଇ ଆସିଲା ଏବଂ ଭିତରକୁ ଗଲା । ସେ ଗଲାପରେ ମୁଁ କହିଲି, 'ମାଇଁ, ସେ କଲ୍ୟାଣୀ ବୟସ ତୁଳନାରେ କେତେ କମ ଦିଶୁଛି ନାଁ ?'

'ନ ଦିଶିବ କାହିଁକି ?' ମାଇଁ ଏତିକି କହିଦେଇ ଭିତରକୁ ଚାଲିଗଲେ ।

କଲ୍ୟାଣୀ କଥା କେଜାଣି କାହିଁକି ମୋ ମନକୁ ବାରମ୍ବାର ଆସୁଥିଲା । ମୋତେ ଆଶ୍ଚର୍ଯ୍ୟ ବି ଲାଗୁଥିଲା । କେମିତି ସେ ତା'ର ଦେହକୁ ଏମିତି ସଜାଡ଼ି ରଖି ପାରିଛି ? ବାହାଘର ହୋଇନି, ଘରସଂସାର ଜଞ୍ଜାଳ ନାହିଁ । ତଥାପି ସେ ଏତେ ସୁଖଶାନ୍ତିରେ ରହିଛି । କେମିତି ? ତା' ବ୍ୟବହାର ବି କେତେ ସୁନ୍ଦର ! ଏମିତି ସ୍ତ୍ରୀଟିଏ ପ୍ରତ୍ୟେକଙ୍କୁ ମିଳିଲେ କେତେ ଭଲ ହୁଅନ୍ତା ! ଦେଖିବାକୁ ସୁନ୍ଦର । ବ୍ୟବହାର ବି ମଧୁର । କଥାରେ କାମରେ ସବୁଥିରେ ସୁଖ ଦେଇ ପାରୁଥିବା ଭଳି ଏମିତି ସ୍ତ୍ରୀଟିଏ ଦରକାର ! ପଚାଶ ବର୍ଷ ପୂର୍ବରୁ ଯଦି ମୁଁ ଜନ୍ମ ହୋଇଥାଆନ୍ତି ତେବେ ଦୁନିଆ ଓଲଟି ଯାଇଥିଲେ ବି ମୁଁ ଏଇ କଲ୍ୟାଣୀକୁ ହିଁ ବାହା ହୋଇଥାଆନ୍ତି । ଯିଏ ଯେତେ ବିରୋଧ କରିଥିଲେ ବି ମୁଁ କାହା କଥା ଶୁଣି ନଥାନ୍ତି । ତାକୁ ହିଁ ବାହା ହୋଇଥାଆନ୍ତି । ଏ କଥା ନିଶ୍ଚିତ ।

ଲଖୋବା ଆସି ପହଞ୍ଚିଲା । ଠେକାର ଲୁଗାକୁ ଖୋଲି ପୁଣି ଥରେ ସଜାଡ଼ି ସାଇଜ କରି ମୁଣ୍ଡ ଉପରେ ରଖି କହିଲା, 'ବାବୁ ଟିକେ ହାତ ଲଗାଇବ କି ?'

ସେ ଯାଇ ସେ ନଡ଼ିଆ ବସ୍ତା ପାଖରେ ଠିଆ ହେଲା ।

'କୁଆଡ଼େ ନଉଛୁ କିରେ ସେ ବସ୍ତା ?'

'ସାଉକାର ପାଖକୁ । କାଲି ଯାଇ ପଇସା ଆଣିବି ।'

ମୁଁ ବସ୍ତାରେ ହାତ ଲଗାଇଲି ଏବଂ ବସ୍ତାଟି ତା'ମୁଣ୍ଡ ଉପରକୁ ଟେକିଦେଲି । ମୁଣ୍ଡ ଉପରେ ବସ୍ତାକୁ ଠିକ ଭାବେ ରଖି ଲଖୋବା ତା' ରାସ୍ତା ଧରିଲା । ମୁହୂର୍ତ୍ତକ ଭିତରେ ସେ ସେଇ ଅନ୍ଧାର ଭିତରେ କୁଆଡ଼େ ଉଭାନ ହୋଇଗଲା ।

ମୁଁ ରୋଷେଇଘର ଭିତରକୁ ଗଲି । ମାଇଁ କଡ଼େଇ ବସେଇ ପାମଡ଼ ଛାଣୁଥିଲେ । ମୁଁ କହିଲି, 'ମାଇଁ, ଲଖୋବା ନଡ଼ିଆ ନେଇ ଗଲା ଏବେ ।'

ମାଇଁ କିଛି କହିଲେନି ।

'ସାହୁକାର ପାଖକୁ ନେଇ ଯାଉଛି ବୋଲି କହିଲା ।'

'ନଉମ ! ତୋତେ ଭୋକ ହବଣି । ବାଢ଼ିଦେବି ?'

'ନାଇଁ । ଏଇନା ଥାଉ । ଲଖୋବା ନଡ଼ିଆ ନେଇ ଠିକଠାକ ଦେବ ତ ? ସେଥିରୁ ପାଞ୍ଚଟା ନଡ଼ିଆ କାଢ଼ି ତା'ର ସେ ରେଡ଼ିମେଡ଼ ଘରେ ନେଇ ଦବନି ତ ଆଉ ?'

'ସିଏ ଯୁଆଡ଼େ ନଉଛି ନଉ । ତୁ ଖାଇବୁ ଯଦି କହ ବାଢ଼ିବି ।'

'ନାଁ, ମାମୁଁ ଆସନ୍ତୁ । ଏକାଠି ଖାଇବୁ ।'

'ତାଙ୍କର କିଛି ଠିକଣା ନାହିଁ । କେବେ କେବେ ବହୁତ ଡ଼େରିରେ ଆସନ୍ତି ।'

'ସବୁଦିନେ ଏମିତି ?'

'ସବୁଦିନେ ନୁହେଁ । କେବେକେବେ ଆଠଟା ବେଳକୁ ଚାଲି ଆସନ୍ତି । କେବେକେବେ ଏଗାରଟା ବାଜିଯାଏ ।'

'ହଉ, ଯେତେବେଳେ ଆସିବେ ଆସନ୍ତୁ ।'

ମୁଁ ବାହାରକୁ ଚାଲି ଆସିଲି । ସେତିକି ବେଳକୁ ମାମୁଁ ଆସୁଥିଲେ । ପିଣ୍ଡାରେ ଚଢ଼ି ମୁଣ୍ଡର ପଗଡ଼ି ଖୋଲି ଦେଇ ଖୁଣ୍ଟିରେ ରଖିଲେ । ମୋତେ ସାମ୍ନାରେ ଦେଖି ପଚାରିଲେ –

'ଖାଇଲୁଣି ?'

'ନାଁ ।'

'ହଉ ଚାଲ ଚାଲ ।'

ହାତ ଗୋଡ଼ ଧୋଇ ମାମୁଁ ରୋଷେଇ ଘରକୁ ଆସିଲେ । ଆମେ ଦୁହେଁ ଖାଇବାକୁ ବସିଲୁ । ତାଟିଆ ଯେମିତି ମୁହଁରେ ବାଜିବ, ମାମୁଁ ସେତିକି ନଇଁ ପଡ଼ି ଖପାଖପ ଖାଇବା ଆରମ୍ଭ କରିଦେଲେ । କ'ଣ ଦରକାର ଅଛି କି ନାହିଁ, ସେକଥା ନ ପଚାରି ମାଇଁ ବି

ଗୋଟିଏ ଗୋଟିଏ ଜିନିଷ ବାଢ଼ି ଚାଲିଥିଲେ । ସେ ବାତାବରଣ ମୋତେ କିମ୍ଭୁତକିମାକାର ଲାଗୁଥିଲା । ଶେଷରେ ମୁଁ ମୁହଁ ଖୋଲିଲି, 'ମନ୍ଦିର ଯାଇଥିଲ ?'

'ହଁ !'

'ସେଠି କଲ୍ୟାଣୀ ଆଣି ଥାଳିରେ ପାନ ଥୋଇଲା ମୋ ସାମ୍ନାରେ । ମୁଁ ଅଧୁଲିଟିଏ ଥାଳିରେ ରଖିଲି । କମ ହେଲାନି ତ ?'

ମାମୁଁ କିଛି ଉତ୍ତର ଦେଲେ ନାହିଁ । ବରଂ ତାଙ୍କ କାନକୁ ଯେମିତି କିଛି ନ ଶୁଭିବ ସେମିତି ଜୋର ଜୋରରେ ଶବ୍ଦ କରି ଡ଼ାଲି ହାପୁଡ଼ୁଥିଲେ ।

ତା'ପରେ ମୁଁ ଆଉ କିଛି କହିଲିନି । ହାତ ଚାଟି ଚାଟି ମାମୁଁ ସେଠୁ ଉଠି ବାହାରକୁ ଗଲେ । କିଛି ସମୟ ପରେ ମୁଁ ବି ପିଢ଼ାରୁ ଉଠି ବାହାରକୁ ଗଲି । ହାତଧୋଇ ଆସି ବାହାର ପିଣ୍ଡାରେ ଏକଡ଼ ସେକଡ଼ ହେଲି ।

'ଶୋଇପଡ଼ -' ମାମୁଁ କହିଲେ ।

ବାହାରେ, ସେଇଠି ପିଣ୍ଡା ଉପରେ ଲଖୋବା ମୋ ପାଇଁ ବିଛଣା ପାରି ଦେଇଥିଲା । ସେଇଠି ବେଞ୍ଚ ଉପରେ ମାମୁଁଙ୍କ ବିଛଣା ପରା ହୋଇଥିଲା । ବିଛଣା ଉପରେ ବସି ମାମୁଁ ମାଳାଗଡ଼େଇ ଜପ କରୁଥିଲେ । ବହୁତ ବେଳଯାଏଁ ମୋତେ ନିଦ ହେଲାନାହିଁ । କଲ୍ୟାଣୀର ଝିଅ ମାନୁକୁ ମୁଁ ଭଲଭାବେ ଦେଖି ପାରିଲିନି ବୋଲି ମନେ ମନେ ଅବସୋସ ଆସୁଥିଲା । ସେ ଦେଖିବାକୁ କେମିତି ହୋଇଥିବ ସେଇ କଳ୍ପନା ଭିତରେ ଆଖିବୁଜି ହଜିଯାଇଥିଲି । କଲ୍ୟାଣୀର ଝିଅ, ଯଦି କଲ୍ୟାଣୀ ପରି ହୋଇଥିବ, ତେବେ ତିରିଶ ବର୍ଷ ଆଗରୁ କଲ୍ୟାଣୀ ତା'ର ବାହାଘର ବୟସରେ ଯେମିତି ଦିଶୁଥିବ ଏଇନା ସେ ସେମିତି ଦିଶୁଥିବ । ଏଇ ସବୁ କଳ୍ପନା ଭିତରେ ମନଟା ମୋର ପୁରା ବୁଡ଼ି ଯାଇଥିଲା ।

ମାମୁଁ ଲଣ୍ଠନ କମେଇ ଦେଇ ବେଞ୍ଚ ତଳେ ରଖିଦେଲେ । ତା'ପରେ ବେଞ୍ଚ ଉପରେ ଲମ୍ବ ହୋଇଗଲେ ।

ରୋଷେଇଘର କାମସାରି ମାଇଁ ମଝିଘରକୁ ଆସିଲେ । ତାଙ୍କ ହାତରେ ଡ଼ିବିଟିଏ ଥିଲା ଓ ଡ଼ିବିର ଆଲୁଅ ଅପେକ୍ଷା କଳାକଳା ଧୂଆଁ ଅଧିକ ଦିଶୁଥିଲା । ମଝିଘର ଟପି ମାଇଁ ଆସି ଦାଣ୍ଡ କବାଟ ପାଖରେ ଛିଡ଼ାହେଲେ । ଡିବି ଉପରକୁ ଟେକି ଚାରି ଆଡ଼କୁ ଆଖି ବୁଲେଇ ଆଣିଲେ । ମୁଁ ଚୁପଚାପ ଶୋଇରହି ତାଙ୍କୁ ହିଁ ଲକ୍ଷ୍ୟ କରୁଥିଲି । ମାମୁଁ ବେଞ୍ଚ ଉପରେ ସିଧା ହୋଇ ଶୋଇଥିଲେ । ମାଇଁ କ୍ଷଣକ ପାଇଁ ମାମୁଁଙ୍କ ଆଡ଼େ

ଚାହିଁଲେ । ଅଙ୍କା ବଙ୍କା ଧୂଆଁର କୁଣ୍ଡଳୀ ଭିତରୁ ମାଇଁଙ୍କ ଶୁଖିଲା ମୁହଁ ଗୋଟାଏ ପ୍ରେତାତ୍ମାର ମୁହଁ ଭଳି ବଙ୍କା ଟେଢ଼ା ହୋଇ ଦେଖା ଯାଉଥିଲା । ପର ମୁହୂର୍ତ୍ତରେ ମାଇଁ ଭିତରକୁ ପଶି ଦାଣ୍ଡ କବାଟ ବନ୍ଦ କଲେ । ପିତଳର ଗୋବ ଲାଗିଥିବା ପୁରୁଣାକାଳିଆ କବାଟ କଡ଼୍ କଡ଼୍ ଶବ୍ଦ ହୋଇ ବନ୍ଦ ହେଲା । ତା'ପରେ ମାଇଁ ବୋଧେ ଭିତରର କାଠ କିଳିଣୀ ଲଗେଇଲେ । ତା'ର ଶବ୍ଦ ବି ଶୁଭିଲା ।

ତା'ପରେ ପିଣ୍ଡାରେ ଅନ୍ଧାର ହିଁ ଅନ୍ଧାର ବ୍ୟାପିଗଲା । ବେଞ୍ଚତଳେ ଦିକି ଦିକି ହୋଇ ଜଳୁଥିବା ଲଣ୍ଠନର ଅସ୍ତିତ୍ୱ ସୁଦ୍ଧା ଜଣା ପଡୁନଥିଲା ।

ଦୂରରୁ ବିଲୁଆ କୁକୁରଙ୍କର ଚିତ୍କାର ଶୁଭୁଥିଲା । ସେସବୁ ଶୁଣୁଶୁଣୁ ମୁଁ ଚୁପ୍ ହୋଇ ପଡ଼ିଥିଲି । କେତେବେଳେ ଯେ ଆଖି ଲାଗିଗଲା ମୋତେ ଜଣା ପଡ଼ିଲାନି । ହଠାତ ନିଦ ଭାଙ୍ଗିଗଲା ପିଣ୍ଡା ତଳୁ କିଏ ଜଣେ ଯୋତା ମଚ ମଚ ଶବ୍ଦ କରି ଚାଲିଗଲା ବେଳେ । ସେ ଶବ୍ଦ ଶୁଣି ମୁଁ ସେଇ ଆଡ଼କୁ ଚାହିଁଲି । ଦିକି ଦିକି ହୋଇ ଜଳୁଥିବା ଲଣ୍ଠନଟିଏ ଧରି କିଏ ଯେମିତି ଦୂରକୁ ଦୂରକୁ ଚାଲି ଯାଉଥିଲା । ଟଙ୍କା ଆକାରର ସେଇ ଆଲୋକବିନ୍ଦୁ ଅନ୍ଧାର ଭିତରେ ଚକଚକ ହୋଇ ଦିଶୁଥିଲା ଠିକ୍ ବିନ୍ଦୁଏ ନିଆଁପରି । କିଛି ସମୟ ପରେ ପୁଣି ସବୁ ଅନ୍ଧାର ହୋଇଗଲା । ଦିଶିଲା ପୂର୍ବ ପରି । ମୁଁ କଡ଼ ଲେଉଟାଇ ବେଞ୍ଚ ତଳକୁ ଚାହିଁଲି । ସେଠି ଲଣ୍ଠନଟି ନଥିଲା ।

ଆଖି ଲାଗି ଆସୁଥିଲା । ସେତିକି ବେଳେ ଦାଣ୍ଡକବାଟର ଭିତର କିଳିଣି ଖୋଲା ହେବାର ଶବ୍ଦ ଶୁଭିଲା । ତା'ପରେ ଗୋଟିଏ ପଟ କବାଟ ଖୋଲିବାର ଆବାଜ ଆସିଲା । ଧୂଆଁ ଉଡ଼ାଉଥିବା ଡ଼ିବିଟକୁ ଉପର କରି ମାଇଁ କ'ଣ ଦେଖୁଥିଲେ ? ଭାବିଲି ପଚାରିବି, 'ମାଇଁ କ'ଣ ଦେଖୁଛ ?' କିନ୍ତୁ ସାହସ ହେଲାନାହିଁ । ମାଇଁ ଲକ୍ଷ୍ୟ କରୁଥିଲେ, ବେଞ୍ଚ ଉପରେ ମାମୁଁ ନଥିଲେ । ସେ ପୁଣି କବାଟ ବନ୍ଦ କରିଦେଲେ । ତାଙ୍କ ହାତରେ ଥିବା ଚୁଡ଼ିର ରୁଣୁଝୁଣୁ ଶବ୍ଦ ସ୍ପଷ୍ଟ ଶୁଭୁଥିଲା । ଅବଶ୍ୟ ଅତି କ୍ଷୀଣ ଭାବରେ । ତାପରେ ଲାଗୁଥିଲା ଯେମିତି ସେ କୋହ ଉଠେଇ କାନ୍ଦୁଛନ୍ତି । ତାଙ୍କର ପ୍ରକୃତରେ କୋହ ଉଠୁଥିଲା କି ସେ କେବଳ ମୋ ମନର ଭ୍ରମ ଥିଲା, ଜାଣି ପାରିଲିନି ।

ଏ ସବୁ ଦେଖିସାରିବା ପରେ ମୋତେ ଖୁବ୍ ଅଶାନ୍ତ ଲାଗିଲା । ବିଛଣାରେ ପଡ଼ିଥିଲି ସିନା ଖୁବ୍ ଅସ୍ଥିର ଲାଗୁଥିଲା । କିଏ କ'ଣ କରୁଛି ମୁଁ କିଛି ବୁଝିପାରୁ ନଥିଲି । ଗୋଟିଏ ପାଖରେ ମାଇଁ ଆଉ ଅନ୍ୟ ପାଖରେ କଲ୍ୟାଣୀ । କଲ୍ୟାଣୀକୁ ମୁଁ

ଏଇମାତ୍ର ଭେଟିଥିଲି । ଆଗରୁ ଚିହ୍ନା ନାଁ ଜଣା ? କିନ୍ତୁ ତା' ବ୍ୟବହାରରୁ ଲାଗୁଥିଲା ସତେ ଯେମିତି ସେ ମୋର ବହୁକାଳର ଚିହ୍ନା ଲୋକଟିଏ ! କେତେ ଶ୍ରଦ୍ଧାରେ କେତେ ଆଦରରେ ସେ ମୋ ସହିତ କଥା କହୁଥିଲା । ତା' କଥା ଶୁଣି ଜଣାପଡୁଥିଲା ସେ କେତେ ସୁଖଶାନ୍ତିରେ ଅଛି । ଆନନ୍ଦରେ ଉବୁଟୁବୁ ହେଲାଭଳି ଲାଗୁଥିଲା । ଆଉ ମାଇଁ ? ବାହା ହୋଇ ସୁଦ୍ଧା ସଂସାର ତାଙ୍କର ଏମିତି । ମାମୁଁଙ୍କ ହାତ ଧରି ସେ ଏ ଘରର ବୋହୂ ହୋଇ ଆସିଛନ୍ତି । ଏତେ ବଡ଼ ଘର । ତାଙ୍କର ଏ ସଂସାର । ସବୁକିଛି ଥାଇ ସୁଦ୍ଧା ଉଦାସୀନତା ତାଙ୍କ ପାଖ ଛାଡ଼ି ଯାଇ ପାରୁନାହିଁ । ମାଇଁଙ୍କ ହାତ ହଲିଗଲେ କାଚର ରୁଣୁଝୁଣୁ ସ୍ୱରର କ୍ଷୀଣ ଆବାଜ ଆସୁଛି । କିନ୍ତୁ କଲ୍ୟାଣୀର ହାତ ହଲିଗଲେ ସତେକି ସ୍ୱରର ଝଙ୍କାର କାନକୁ ଛୁଇଁଯାଏ ମନ ମୁଗ୍ଧ କରି । କାହିଁକି ଏ ଫରକ ?

ପ୍ରକୃତରେ ଦେଖିବାକୁ ଗଲେ କେଉଁଥିରେ ସୁଖଶାନ୍ତି ଅଛି ? ବିବାହରେ ? ସଂସାରରେ ? ନାଁ ସନ୍ତାନ ସନ୍ତିତିଙ୍କ ଭିତରେ ? ମାମୁଁ କ'ଣ କଲ୍ୟାଣୀ ପାଖକୁ ଯାଇଥିବେ ? ଘରର ଘରଣୀକୁ ଛାଡ଼ି ଏ ଉତ୍ତର ବୟସରେ ଏସବୁ କାହିଁକି ? ଏସବୁ କରିବା ପାଇଁ ତାଙ୍କର ମନ ହେଉଛି କେମିତି ? ମାଇଁଙ୍କ ପ୍ରତି କ'ଣ ତାଙ୍କର କୌଣସି ଆକର୍ଷଣ ନାହିଁ ? କାହିଁକି ? ଯଦି ବା ସେ କଲ୍ୟାଣୀ ପାଖକୁ ଯାଇଥିବେ, ତେବେ କଲ୍ୟାଣୀର ଏତେ ଆକର୍ଷଣ ତାଙ୍କ ପାଖରେ କାହିଁକି ?

ମନ ଭିତରେ ଏମିତି ହଜାରେ ପ୍ରଶ୍ନ ଉଠୁଥିଲା । କିନ୍ତୁ କେଜାଣି କାହିଁକି କଲ୍ୟାଣୀ ପ୍ରତି ମୋ ମନରେ ଶ୍ରଦ୍ଧା ହିଁ ଆସୁଥିଲା । କାରଣ ବିବାହ ନକରି ସୁଦ୍ଧା ପୁରୁଷଙ୍କୁ ଆକର୍ଷଣ କରିବାର ସବୁ ଗୁଣ ତା' ପାଖରେ ଅଛି । ନିଜେ ବି ବେଶ ସୁଖରେ ରହିଛି । ଯଦି ତା'ର ବିବାହ ହୋଇଥାଆନ୍ତା ? ଯଦି ସେ ମାମୁଁଙ୍କ ସ୍ତ୍ରୀ ହୋଇ ଆସିଥାଆନ୍ତା ? ମାମୁଁ କ'ଣ ଏମିତି ରାତି ଅଧରେ ଉଠି ବାହାରକୁ ଚାଲି ଯାଉଥାଆନ୍ତେ ?

ଏମିତି ଭାବୁଭାବୁ କେତେବେଳେ ନିଦ ଲାଗିଗଲା । ପାହାନ୍ତାରେ ନିଦ ଭାଙ୍ଗିଲା ଘୁଂଘୁଡ଼ି ଶବ୍ଦରେ । ମୁଁ ମୁଣ୍ଡ ଟେକି ଚାହିଁଲି । ବେଞ୍ଚ ଉପରେ ସିଧା ହୋଇ ମାମୁଁ ଶାନ୍ତ ଭାବରେ ଶୋଇଥିଲେ । ତାଙ୍କ ଘୁଂଘୁଡ଼ି କିନ୍ତୁ ଚାଲିଥିଲା ଗୋଟିଏ ଲୟରେ । ଲିଭି ଯାଇଥିବା ଲଣ୍ଠନଟି ବେଞ୍ଚତଳେ ରଖା ହୋଇଥିଲା ।

ସକାଳେ ଉଠିଲି । ଦୁଇଟା କପରେ ଚା ରଖାଯାଇଥିଲା । ମାମୁଁ କିଛି ନ

କହି ତାକୁ ଠେଲିଦେଲେ ଏବଂ ବାହାରକୁ ଚାଲିଗଲେ ।

କାନ୍ଥଘଣ୍ଟାରେ ଠଂ ଠଂ ହୋଇ ନ'ଟା ବାଜିଲା । ରୋଷେଇ ଘରକୁ ଯାଇ ଆଉ ଥରେ ଚା'ପିଇଲି । ମାଇଁଙ୍କ ମୁହଁକୁ ଚାହିଁଲି । କ୍ଷଣକ ପାଇଁ ଲାଗିଲା ମାଇଁ ରାତିର ଘଟଣା ବିଷୟରେ କିଛି କହିବେ । କିନ୍ତୁ ସେ କିଛି କହିଲେନି । ଚୁପଚାପ ମୋତେ ଚାହା କପ ଧରେଇଦେଲେ । ତାପରେ ନଳଟି ଧରି ଚୁଲି ଫୁଙ୍କିବାରେ ଲାଗିଗଲେ । ଧୂଆଁରେ ତାଙ୍କ ଆଖି ନାକ ସବୁ ନାଲି ପଡ଼ିଯାଇଥିଲା । ଆଖିରୁ ନାକରୁ ପାଣି ଗଳି ପଡୁଥିଲା ।

ଚାହା ପିଉ ପିଉ ମୁଁ କହିଲି, 'ଯାଉଛି ଟିକେ ବାହାରୁ ବୁଲି ଆସିବି ।'

'କୁଆଡ଼େ ଯିବୁ ?' ସ୍ୱରରେ କିଛି ଚିନ୍ତା ଥିଲା ଭଳି ଲାଗିଲା ।

'ଏଇ ମନ୍ଦିର ପାଖରୁ ଆସୁଛି ।'

'ସକାଳେ ସନ୍ଧ୍ୟାବେଳେ ସବୁବେଳେ ମନ୍ଦିରକୁ ଯିବା କ'ଣ ଦରକାର ? ଯିବୁ ଯଦି ଯାଆ ବଜାର ଆଡ଼େ ବୁଲି ଆସିବୁ । ଭଲ ମାଛ ମିଳିଲେ ନେଇ ଆସିବୁ ।'

'ହଉ ।'

ମାଛ ପାଇଁ ବ୍ୟାଗ ଗୋଟିଏ ଧରି ମୁଁ ବାହାରକୁ ଆସିଲି । କିଛି ବାଟ ଯାଇ ମୁଁ ପଛକୁ ଚାହିଁଲି । ମାଇଁ ପଛପଟ କବାଟ ପାଖରେ ଛିଡ଼ାହୋଇ ମୋତେ ଚାହିଁଥିଲେ । ଡାହାଣ କଡ଼କୁ ଭାଙ୍ଗିଗଲେ ମନ୍ଦିର ଆଉ ବାଁ କଡ଼କୁ ଗଲେ ବଜାର । ମୁଁ ବାଁ ପଟକୁ ଚାଲିଲି । କିଛି ବାଟଯାଇ ଫେରିଲି । ମାମୁଁଙ୍କ ଘରର ପଛପଟ ବାଟେ ବୁଲିଯାଇ ମନ୍ଦିର ଆଡ଼େ ଚାଲିଲି ।

ମନ୍ଦିରର ହତା ଭିତରକୁ ପଶିବା ଆଗରୁ କଲ୍ୟାଣୀର ଘର ପଡ଼ିଲା । ତା ଘରର ବାଉଁଶ ଧଡ଼ା ଆଡ଼େ ଅନେଇଲି । କଲ୍ୟାଣୀ ଘରର ଦୁଆର ରାସ୍ତାକୁ ଦିଶୁଥିଲା । ବୁଢ଼ାଟିଏ ସେଠି ବସି ମୃଦଙ୍ଗରେ ଡ଼ୋର ବାନ୍ଧି ହାତରେ ଥାପୁଡ଼ା ମାରୁଥିଲା । କଲ୍ୟାଣୀର କେଉଁଠି ପତ୍ତା ନଥିଲା । ସେ ପାଖରେ ସେଇଠି ଥିଲେ ମୋ ଉପରେ ଆଖି ପଡ଼ିଯିବା ମାତ୍ରେ ଡାକ ପକେଇ ଥାଆନ୍ତା । ତା' ଡାକ ଶୁଣି ମୁଁ ବି ବାଉଁଶ ଡେଇଁ ସାଙ୍ଗେ ସାଙ୍ଗେ ଭିତରକୁ ଯାଇଥାଆନ୍ତି । କିନ୍ତୁ ସେ ତ ସେଠି ଦିଶୁନଥିଲା । ପାଗଳଙ୍କ ପରି ରାସ୍ତା ଉପରେ ଛିଡ଼ା ହେବାର ଅର୍ଥ କିଛି ନ ଥିଲା । ତେଣୁ ମିଛ ବାହାନା କରି ମନ୍ଦିର ଆଡ଼କୁ ଗଲି । ଗାଧୋଇ ନଥିବାରୁ ମନ୍ଦିର ଭିତରକୁ ଯିବାର ପ୍ରଶ୍ନ ଇ ନଥିଲା । ବାହାରୁ ବାହାରୁ ମୁଣ୍ଡିଆ ମାରି ଯେଉଁ ଯାଗାରୁ ବାହାରିଥିଲି ସେଇଠିକୁ

ଫେରିଲି । ଆସିଲାବେଳେ କଲ୍ୟାଣୀର ଘରଆଡ଼କୁ ଦୃଷ୍ଟି ଆପେ ଆପେ ଚାଲିଗଲା । ସେ ବୁଢ଼ୀଟି ତାର ମୁଦଙ୍ଗ ସଜଡ଼ାକାମରେ ବ୍ୟସ୍ତ ଥିଲା । ଭାରି ଚିଡ଼ି ମାଡ଼ିଲା, ମନ ହଉଥିଲା ବୁଢ଼ୀପିଠିରେ ନିର୍ଘାତିଆ ବିଧା ଗୋଟିଏ ବସେଇ ଦେବାପାଇଁ । ସେତିକିବେଳେ ତାଙ୍କ ବାରିରେ ଥିବା କଦଳୀଗଛ ମୂଳରେ ନନ୍ଦିଆ ପାଖରେ କିଏ ଗୋଟାଏ ହଲଚଲ ହେବାଭଳି ଦିଶିଲା । ମୋ ଚପଲରେ ଅଟକି ଯାଇଥିବା ଗୋଡ଼ି ଗୋଟିଏ ବାହାର କରିବାପାଇଁ ନଇଁ ପଡ଼ିଲି ।

କଦଳୀ ଗଛ ପାଖରେ ସାରୁ ବୁଦା ମଧ୍ୟ ଥିଲା । ସେଇଠି ଗୋଟିଏ ମାଟିକୁଣ୍ଡରେ ପାଣି ଥୁଆହୋଇଥିଲା । ମାନୁ ସେଇଠି ପଡ଼ିଥିବା ପଥର ଖଣ୍ଡେ ଉପରେ ମାଛ ଧୋଉଥିଲା । ପିନ୍ଧିଥିବା ଲୁଗାକୁ ଟିକେ ଉପରକୁ କରି ଅଣ୍ଟାରେ ଖୋସି ଦେଇଥିଲା । ଲୁଗାରେ ଆଇଁଶ ପାଣି ନପଡ଼ିବ ବୋଲି ବୋଧେ ବେଶ ଯାକିଯୁକି ଦେଇଥିଲା ଲୁଗାକୁ । ପଣତଟି ଅଣ୍ଟାରେ ଖୋସା ହୋଇଥିଲା । ଦୂରରୁ ତା ମୁହଁଟା ତେଲିଆ ଦିଶୁଥିଲା । ମୁଣ୍ଡର ବାଳ ଫୁରୁଫୁରୁ ହୋଇ ଉଡୁଥିଲା । ଗୋରା ଗୋରା ପାଦରେ ଚିତ୍ର ବିଚିତ୍ର ମଞ୍ଜୁଆତିର ନାଲିରଙ୍ଗ ପାଦକୁ ଭାରି ମାନୁଥିଲା । ଆଣ୍ଠୁ ତଳଠାରୁ ପାଦର ଗୋଇଠିଯାଏ ଦେଖାଯାଉଥିଲା ତାର ଗୋରା ରଙ୍ଗ । ମଝିରେ ମଝିରେ ପାଣି ପକେଇବା ପାଇଁ ନଇଁ ପଡୁଥିବା ବେଳେ ଆଣ୍ଠୁ ଉପରର କିଛି ଅଂଶ ମଧ୍ୟ ଦିଶିଯାଉଥିଲା । ସେ ମାଂସଳ ଅଂଗରେ କଲ୍ୟାଣୀ ଦେହରେ ଦିଶୁଥିବା ଶିର ପରି ଶିର ଦେଖାଯାଉଥିଲା ନୀଳ ରଙ୍ଗର । ହଠାତ୍ ମୋର କ'ଣ ଯେମିତି ମନେ ପଡ଼ିଗଲା । ମାନୁ ଆଣ୍ଠୁର ଉପର ଭାଗରେ ଦିଶିଯାଉଥିବା ନୀଳ ରଙ୍ଗର ସେ ଶିରର ଗଣ୍ଠି ମୋ ମୁଣ୍ଡ ଖରାପ କରିଦେଲା । କାହାଠାରୁ ଗୋଟିଏ ଶୁଣିଥିଲି ଯେ ଏମିତି ଗଣ୍ଠି କେବଳ ମା' ହେବାପରେ ହିଁ ଦେଖାଯାଏ । କାହାଠାରୁ ଶୁଣିଥିଲି କି କେଉଁଠି ପଢ଼ିଥିଲି ସେ କଥା ଠିକ ଭାବରେ ମନେ ପଡୁନଥିଲେ ବି ଅକାରଣରେ ମନଟା ଉଦାସ ହୋଇଗଲା ।

ମୂର୍ତ୍ତି ଭଳିଆ ସେଇଠି ସେମିତି ଛିଡ଼ାହୋଇ ରହିଯିବାପାଇଁ ମନ ହେଉଥିଲା । ମାନୁର ବି ମୋ ପ୍ରତି ଲକ୍ଷ୍ୟ ନଥିଲା । କିନ୍ତୁ ସେଇଠି ରାସ୍ତା ଉପରେ ସେମିତି ଛିଡ଼ାହୋଇ କାହାଆଡ଼କୁ ଚାହିଁ ରହିବା ଆଦୌ ଉଚିତ ନଥିଲା । ଅନ୍ତତଃ ପରିବାରର ଦୃଷ୍ଟିକୋଣରୁ ସେ ଗୋଟିଏ ଅତ୍ୟନ୍ତ ଅସୁନ୍ଦର କଥା ଥିଲା । ତା'ଛଡ଼ା ଏମିତି କିଛି ଗୋଟାଏ କାମ କରିବାର ଅଭ୍ୟାସ ସୁଦ୍ଧା ମୋର ନଥିଲା । ଆଉ ମୁହୂର୍ତ୍ତଟିଏ ସୁଦ୍ଧା ସେଠି ନ ଅଟକି ସିଧା

ଦୌଡ଼ିଲି । ଦି'ଖେପାରେ କେମିତି ଯାଇ ବଜାରରେ ପହଞ୍ଚିବି, ମନେ ମନେ ସେଇୟା ଭାବି ଆଗଉଥିଲେ ବି ପୁଣିଥରେ କଦଳି ଗଛ ଆଡ଼କୁ ଚାହିଁବାକୁ ଭୁଲି ନଥିଲି ।

ବଜାରରେ ପହଞ୍ଚିବା ବେଳକୁ ସୁଦ୍ଧା ମୋ ମନରୁ ମାନୁର ଭାବନା ଯାଇ ନଥିଲା । ମୁଁ କେବଳ ତା'ରି ବିଷୟରେ ହିଁ ଭାବୁଥିଲି । ତା' ମୁହଁ ସାମ୍ନାରୁ ଦେଖିଲେ କେମିତି ଦିଶିବ ? ତା ଦେହର ଗଢ଼ଣ କେମିତି ହୋଇଥିବ ! କାରଣ ଏ ପର୍ଯ୍ୟନ୍ତ ମୁଁ ତାକୁ ମୋ ଆଖି ସାମ୍ନାରେ ଭଲ ଭାବରେ ଦେଖି ନଥିଲି । ତା'ର ସେ ଗୋରା ଗୋରା ପାଦ ଦୁଇଟି ମୋ ମନରେ ବସାବାନ୍ଧି ରହିଯାଇଥିଲା । ସେଇ ମଞ୍ଜୁଆତି ରଙ୍ଗରେ ଚିତ୍ରିତ ପାଦ ଦୁଇଟିକୁ ମୋ ଅର୍ନ୍ତଦୃଷ୍ଟି ମଧରେ ମୁଁ ବାନ୍ଧି ରଖିଥିଲି । ରହି ରହି ମୋତେ ଖୁବ ଆଶ୍ଚର୍ଯ୍ୟ ବି ଲାଗୁଥିଲା । ଏମିତି କେମିତି ହେଲା ?

ବଜାରରୁ ଫେରିଲି । ମାଇଁଙ୍କ ସାମ୍ନାରେ ମାଛ ବ୍ୟାଗଟି ରଖିଦେଲି । ଭାବିଲି ମାଇଁ ପଚାରିବେ କି ମାଛ ଆଣିଛି ।

କିନ୍ତୁ ମାଇଁ ପଚାରିଲେ, 'ମନ୍ଦିର ଖୋଲାଥିଲା ?'

'ଧେତ୍ ! ମୁଁ ଆଉ ମନ୍ଦିର ଆଡ଼େ ଗଲି କେତେବେଳେ ?'

ହାତ ହଲେଇ ମୁଁ ଚଟକରି ଉତ୍ତର ଦେଇଦେଲି । ମାଇଁଙ୍କୁ ବୋଧେ ଏ ଉତ୍ତର ଶୁଣି ଖୁବ ଶାନ୍ତି ଲାଗିଲା । ବ୍ୟାଗ ଉଠେଇ ନେଇ ସେ ଅଗଣାକୁ ଚାଲିଗଲେ ।

ଖରାବେଳେ ଅଳ୍ପସମୟ ଶୋଇପଡ଼ିବା ପରେ ଉଠି ଚାହା ପିଇବା ପାଇଁ ରୋଷେଇ ଘରକୁ ଗଲି । ମାଇଁ କାନ୍ଥକୁ ଡ଼େରି ହୋଇ ବସିଥିଲେ । କ'ଣ ଗୋଟାଏ ଚିନ୍ତାରେ ପୁରାପୁରି ବୁଡ଼ିଯାଇଥିଲେ । ମୋତେ ଦେଖି ମୋ ଆଡ଼କୁ ପିଢ଼ା ଖଣ୍ଡେ ବଢ଼େଇଦେଲେ । ନିଜେ ଉଠିଯାଇ ଚାହା ବସେଇଲେ ।

ପିଢ଼ାରେ ବସି ତଳକୁ ମୁହଁକରି ମୁଁ ଚାହା ପିଉଥିଲି । ମାଇଁ ମୋ ଆଡ଼କୁ ନିରେଖି ଚାହିଁଛନ୍ତି ବୋଲି ଲକ୍ଷ୍ୟ କଲି । ହଠାତ ମୋତେ ପଚାରିଲେ, 'କାଲି କଲ୍ୟାଣୀ କ'ଣ କହୁଥିଲା କି ?'

'କିଛି ନାହିଁ ମ ! ମାଆର ପିଲାଦିନ କଥା ସବୁ ଗପୁଥିଲା । ଯେତେହେଲେ ମାଆର ପିଲାଦିନ ସାଙ୍ଗ ।'

'ହୁ..... ସାଙ୍ଗ ନୁହଁ ଆଉ କ'ଣ ?'

ମାଇଁଙ୍କ ସ୍ୱରରେ ବିରକ୍ତିର ଚିହ୍ନ ସ୍ପଷ୍ଟ ଥିଲା ।

ମୁଁ ବି ଚୁପ ରହିଲି ।

'ସିଏ ଗୋଟାଏ କି ସାଙ୍ଗ ମ ! ଉପରେ ପଡ଼ି କଥା କହିବା ତା'ର ଅଭ୍ୟାସ । ମୋ ଦେହ କେମିତି ଅଛି ବୋଲି ବୁଝିବା ପାଇଁ ବେଳେବେଳେ ଆସି ପହଞ୍ଚିଯାଏ । ମୋ କଥା ବୁଝିବା ଖାଲି ଗୋଟାଏ ବାହାନା ।'

ଗାଲରେ ହାତ ଦେଇ ମାଇଁ ବସିଗଲେ ଚୁପଚାପ ହୋଇ । ସେ ଚୁପଚାପ ପରିବେଶରେ ମୁଁ ଅଣନିଃଶ୍ୱାସୀ ହୋଇ ପଡୁଥିଲି । ସେ ନୀରବତା ମୋତେ ଭୟଙ୍କର ଲାଗୁଥିଲା ।

ପିଢ଼ାରୁ ଉଠିପଡ଼ି ମୁଁ ମଝିଘରକୁ ଆସିଲି ।

ମୋ ପଛେ ପଛେ ମାଇଁ ବି ଆସିଲେ । ସେ ଅନ୍ଧାରିଆ ଘର ଭିତରେ ମୋ ପାଖକୁ ଚାଲିଆସି ମୋ କାନ୍ଧ ଉପରେ ହାତରଖି ଫୁସ୍‌ଫୁସ୍ ହୋଇ ପଚାରିଲେ,

'କଲ୍ୟାଣୀ ଯାଙ୍କ ବିଷୟରେ କ'ଣ କହୁଥିଲା କି ?'

'କାହା ବିଷୟରେ ?' ଆଶ୍ଚର୍ଯ୍ୟ ହୋଇ ମୁଁ ପଚାରିଲି ।

'ଏଇ ମ, ତୋ ମାମୁଁଙ୍କ ବିଷୟରେ ।'

'ନାଁ କିଛି ନାହିଁ ।'

'ମିଛ କଥା କହନା –' ଜବରଦସ୍ତି କଲାପରି କହିଲେ, 'ମୋର ରାଣ, ସତ କହିଲୁ – ।'

'ସତ କହୁଛି ମାଇଁ ! ସେ ମାମୁଁଙ୍କ କଥା କିଛି ବି କହୁନଥିଲା ।'

ସେ ଅନ୍ଧାର ଭିତରେ ମାଇଁ ଭିତରକୁ ଚାଲିଗଲେ । ମୋ କଥା ସେ ଆଦୌ ବିଶ୍ୱାସ କରିପାରୁନଥିଲେ ବୋଧହୁଏ । ମନରେ ତାଙ୍କର ସନ୍ଦେହ ଭରି ଯାଇଥିଲା ଭଳି ଲାଗୁଥିଲା ।

ମନେ ମନେ ଭାବିଲି କହିବି, 'ମାଇଁ, ମାମୁଁଙ୍କ ବିଷୟରେ ଏମିତି ଯାତୁ ସାତୁ ବାଜେକଥା ଭାବନାହିଁ । ଏଇ ସନ୍ଦେହୀ ସ୍ୱଭାବରୁ ତୁମର ଦେହ ଆସି ଏତେ ସରି ହେଲାଣି । ଚମ୍ପାଫୁଲ ରଙ୍ଗର ଦେହ ଏବେ ଶୁଖିଲା କାଠ ଭଳି ଦିଶୁଛି । ଆଉ ସେମିତି କଥାସବୁ ମନକୁ ଆଣନାହିଁ ।'

କିନ୍ତୁ ମୋ ପାଟିରୁ କଥା ଇ ବାହାରିଲାନି । କ'ଣ କହିବି ? କେମିତି କହିବି ? ସନ୍ଦେହ କରନାହିଁ ବୋଲି ବି କେମିତି କହିବି ତାଙ୍କୁ ? ରାତିରେ ମାମୁଁ ତାଙ୍କ ବିଛଣାରେ ନଥିଲେ । ଏକଥା ମାଇଁ ସ୍ୱଚକ୍ଷୁରେ ଦେଖିଛନ୍ତି ! ମାମୁଁଙ୍କ ପରି ଲୋକକୁ ମାଇଁ ନିଜ ଆଡ଼କୁ ଟାଣି ପାରିଲେନି । ଇଏ ତାଙ୍କର ଦୁର୍ଭାଗ୍ୟ ନୁହେଁ ତ ଆଉ କ'ଣ ? ତା'ପରେ

କଲ୍ୟାଣୀ ପାଖକୁ ଯେ ଟାଣି ହୋଇଗଲେ, ମାଇଁଙ୍କ ପାଇଁ ସେ ଥିଲା ତାଠାରୁ ବଡ଼ ଦୁର୍ଭାଗ୍ୟ ।

ମୁଁ ପିଣ୍ଡାରୁ ଘର ଭିତରକୁ ଆସି ପଞ୍ଜାବୀଟା ଆଣି ପିନ୍ଧିଲି । ବୋତାମ ଲଗେଇବା ପାଇଁ ଯାଇ ଚମକି ପଡ଼ିଲି । ସାମ୍ନାର ସୁନାବୋତାମ ନଥିଲା । ସାଙ୍ଗେ ସାଙ୍ଗେ ମନରେ ଲଖୋବା ପ୍ରତି ସନ୍ଦେହ ଆସିଲା । ଅବଶ୍ୟ ଆଗରୁ ତା'ର ଏମିତି ସ୍ୱଭାବ କେବେ ବି ନଥିଲା । ମାଇଁଙ୍କ କଥା ଅନୁସାରେ ଏବେ ହୁଏତ ସେ ତା'ର ସେଇ ପ୍ରେମିକାଟିକୁ ନେଇ ସବୁ ଦେଇ ଦେଉଛି । କିନ୍ତୁ, ନାଁ ! ହାତ ପକେଟରେ ପଶିବା କ୍ଷଣି ବୋତାମ ହାତକୁ ଲାଗିଲା । ପଞ୍ଜାବୀର ବୋତାମ ଲଗାଇ ହାତରେ ଟର୍ଚ୍ଚ ଧରି ଅନ୍ୟ ହାତରେ ବାଡ଼ିଟିଏ ଧରି ମୁଁ ବାହାରି ପଡ଼ିଲି ।

'କ'ଣରେ, କୁଆଡ଼େ ବାହାରିଲୁ ?' ମାଇଁ ପଚାରିଲେ ।

'ଏମିତି ଟିକେ ବୁଲି ଆସିବି ଯାଉଛି । ଖାଇ ଦେଇ ବସିଲାରୁ ହଜମ କରିବା କଷ୍ଟ ହେଉଛି ।'

'ଯାଆ, ଯାଆ, ସମୁଦ୍ରକୂଳଆଡ଼େ ବୁଲିଆ, ଭଲ ଲାଗିବ ।'

'ହଉ !'

ମୁଁ ବାହାରକୁ ବାହାରି ଆସିଲି ।

ସେତିକିବେଳେ ମାମୁଁ ଚାରିଟା କଲମୀ ଗଛ ନେଇ ପୋତିବା ପାଇଁ ବାରିଆଡ଼େ ଗାଡ଼ ଖୋଳୁଥିଲେ ।

ମୁଁ ସିଧା ସିଧା ଡାହାଣ କଡ଼କୁ ଚାଲିଲି । ବୁଲି ବୁଲି ପଛକୁ ଚାହୁଁଥିଲି । କିନ୍ତୁ କବାଟ ପାଖରେ ମାଇଁ ଦିଶୁ ନଥିଲେ । ସ୍ୱସ୍ତିରେ ନିଶ୍ୱାସ ମାରି ସିଧା ମନ୍ଦିର ଆଡ଼େ ଚାଲିଲି ।

ମନ୍ଦିର ହତା ଭିତରେ ପଶିଲି । କଣେଇ କଣେଇ କଲ୍ୟାଣୀର ଘର ଆଡ଼କୁ ଚାହିଁଲି । ଅଗଣାରେ ତୁଳସୀ ଚଉରା ସାମ୍ନାରେ ଥିବା ଜୁଇଗଛର ବୁଦାପାଖରେ ଛିଡ଼ା ହୋଇ ମାନୁ ଫୁଲକଢ଼ ସବୁ ତୋଳୁଥିଲା । ଜୁଇଗଛ ଏତେ ଗହଳିଆ ହୋଇ ବଢ଼ିଥିଲା ଯେ ମାନୁର ମୁହଁ ମୋତେ ଆଦୌ ଦିଶୁନଥିଲା । କିନ୍ତୁ ଫୁଲ ତୋଳା ସହ ଗୁଣୁଗୁଣୁ ହୋଇ ଗୀତର ସ୍ୱର ବି ଛାଡ଼ିଦେଇଥିଲା । ସେଇ ସ୍ୱରରୁ ମୁଁ ଜାଣିଲି ସେଠି ମାନୁ ଅଛି । ତା'ର ମଧୁର ସ୍ୱର କିନ୍ତୁ ଚାଲିଥିଲା.....

ଗୀତ ବାଟରେ ଗୀତ ଚାଲିଥିଲା । ଗୀତ ସହିତ ଫୁଲତୋଳା ବି ଚାଲିଥିଲା ।

ଶାଢ଼ୀ ପଣତକୁ ଅଣ୍ଟାରେ ଖୋସି ସେଇ ଅଣ୍ଟି ଭିତରେ ନେଇ ଫୁଲକୁ ରଖୁଥିଲା ।

ଦାଣ୍ଡ ପଟରେ କଲ୍ୟାଣୀ ଦିଶୁନଥିଲା । ଥିଲେ ତ ନିଶ୍ଚୟ ପାଟି କରି ଡାକି ଥାଆନ୍ତା ମୋ ଉପରେ ଆଖି ପଡ଼ିଯିବା କ୍ଷଣି ! ବାହାର କାନ୍ଥରେ ମୃଦଙ୍ଗ ଟଙ୍ଗା ହୋଇଥିଲା । ସେପଟୁ ନଜର ଫେରାଇ ମୁଁ ମନ୍ଦିରକୁ ପଶିଲି ।

ଠାକୁରଙ୍କୁ ପ୍ରଣାମ କରିବା ପରେ ମୁଁ ବହୁତ ସମୟ ଯାଏ ସେମିତି ବସି ରହିଲି ବିଛା ହୋଇଥିବା ଦରି ଉପରେ । କିନ୍ତୁ କଲ୍ୟାଣୀର ସେଠି ବି ପତ୍ତା ନଥିଲା । ବହୁତ ସମୟଯାଏ ସେଠି ସେମିତି ବସିବା ପରେ ବିରକ୍ତିରେ ଉଠି ପଡ଼ିଲି । ବାହାରକୁ ଆସିଲି । ସାମ୍ନାରେ ପୁଣି ଆଖି ଆଗକୁ ଆସିଲା କଲ୍ୟାଣୀର ଘର ।

ତୁଳସୀ ଚଉରାରେ ଦୀପ ଥୋଇ ମାନୁ 'ଶୁଭମ୍ କରୋତି କଲ୍ୟାଣମ୍.....' ଗାଇବାରେ ମଗ୍ନ ଥିଲା । ତା ଆଖି ଦୁଇଟି ବନ୍ଦ ଥିଲା, କିନ୍ତୁ ହାତ ଯୋଡ଼ି ଛିଡ଼ାହୋଇଥିଲା ସେ । ସଂଧ୍ୟାଦୀପର ମନ୍ଦଆଲୋକରେ ପ୍ରାର୍ଥନାରତ ମୁହଁର ଅନ୍ତରର ପ୍ରସନ୍ନତା ସ୍ପଷ୍ଟ ଝଲକୁଥିଲା । ସେଇ ସ୍ତିମିତ ପ୍ରକାଶ ଭିତରେ ତା'ର ସେ ଶାନ୍ତ ମୁଖମୁଦ୍ରାକୁ ଚାହିଁବାକୁ ଖୁବ୍ ଭଲ ଲାଗୁଥିଲା । ପ୍ରଥମରୁ ହିଁ ମୋର ଦେବଦାସୀ ପ୍ରତି କେମିତି ଗୋଟାଏ ଆକର୍ଷଣ ଥିଲା । ସେଥିରେ କଲ୍ୟାଣୀ ପରି ଦେବଦାସୀର ଝିଅ ମାନୁକୁ ମୁଁ ଏଇ ପ୍ରଥମଥର ପାଇଁ ଭଲଭାବେ ଦେଖୁଥିଲି । ଏ ସମୟ, ଏ ପରିବେଶ ଖୁବ୍ ଅଲଗା ଲାଗୁଥିଲା । ମନେ ମନେ ଭାବିଲି ମୋର ବି ଘର ହେଲେ ଏମିତି ହେବା ଦରକାର ! ଅଗଣାରେ ଏମିତି ତୁଳସୀ ଚଉରାଟିଏ, ତା କଡ଼କୁ ଜୁଇ ଗଛର ବୁଦାଟିଏ, ତା ସହିତ ସଂଧ୍ୟା ପ୍ରାର୍ଥନାର ଗୁଣୁ ଗୁଣୁ ସ୍ୱର ! ଦେବଦାସୀର ଘର ହେଲେ ବି ଏଠି ମାମୁଁଙ୍କ ଘର ଅପେକ୍ଷା ବେଶୀ ଭଲ ଲାଗୁଥିଲା । ମନ ହେଉଥିଲା ଚଉରା ପାଖରେ ଲୁଚି ଲୁଚି ଛିଡ଼ାହୋଇ ଗୋଟିଏ ଧ୍ୟାନରେ ମାନୁ ମୁହଁକୁ ସେମିତି ଚାହିଁ ରହିଥିବି । କିନ୍ତୁ ସେତିକିବେଳେ ମାନୁ ବୁଲିପଡ଼ି ଘରଭିତରକୁ ଚାଲିଗଲା ।

ମୁଁ ଟର୍ଚ୍ଚ ଜଳେଇ ବାଡ଼ିଟିକୁ ପାଦପାଖରେ ଥିବା ଗୋଟିଏ ପଥର ଉପରେ ଜାଣି ଜାଣି ଠକ ଠକ କଲି ।

ତୁଳସୀ ଚଉରା ଆରପଟରେ ବସିଥିବା କଲ୍ୟାଣୀ ଚଟ କରି ପିଣ୍ଡାରୁ ଉଠି ଆସିଲା ।

'କିଏ ରେ ?'

'ମୁଁ !'

'କିଏ, ବାବୁଲନାଥ ?'

'ହଁ ।'

କଲ୍ୟାଣୀ ଆଉ କିଛି ପଚାରିବା ପୂର୍ବରୁ ମୁଁ ବାଉଁଶ ଡ଼େଇଁ ଭିତରକୁ ପଶିଲି । ଛାତି ଅବଶ୍ୟ ଧଡ଼ଧଡ଼ ହେଉଥିଲା । ମୋର କିନ୍ତୁ ଆଉ ଅପେକ୍ଷା କରିବାର ଧୈର୍ଯ୍ୟ ନଥିଲା ।

'ଠାକୁରଙ୍କୁ ମୁଣ୍ଡିଆ ମାରି ଆସିଲୁ ?'

'ହଁ ।'

'ହଉ ବସ ।'

କଲ୍ୟାଣୀ ସେଇ ପିଣ୍ଡାରେ ଗୋଟିଏ ଖୁଣ୍ଟ ପାଖରେ ମୋତେ ବସିବା ପାଇଁ ଜାଗା କରିଦେଲା । ମୁଁ ବସିଲି । ମନେ ମନେ କିନ୍ତୁ ଖୁବ ଡ଼ର ବି ଲାଗୁଥିଲା । ଏଇନା ଯଦି ମାମୁଁ ମନ୍ଦିର ଆଡ଼େ ଆସିବେ ତ କଥା ସରିଲା । ଏକା ଥରେ ମହାଭାରତ । ମୁଁ କନକନ ହୋଇ ଏ ପଟେ ସେ ପଟେ ଚାହିଁଲି । ସେଇ ପାଖ ଘରେ ମାନୁ କାନ୍ଥକୁ ଡ଼େରି ହୋଇ ବସିଥିଲା । ତା ବାଁ ପଟକୁ ଗୋଟିଏ ରୁଖା ଉପରେ ଦୀପଟିଏ ଜଳୁଥିଲା । ସେ ସେଇ ସେତିକି ଆଲୁଅରେ ଫ୍ରେମରେ କନା ରଖି କିଛି ଗୋଟିଏ ସିଲେଇକାମ କରୁଥିଲା ।

ଭାବିଲି ଏମିତି ସିଲେଇ କରୁଥିବା ବେଳେ ସେ ପୁଣି ଥରେ ଗୁଣୁଗୁଣୁ ହୁଅନ୍ତାନି ?

ସେ ମୁହୂର୍ତ୍ତରେ ମୋ ମନରେ ଆଉ କୌଣସି କଥା ନଥିଲା । ମାନୁ ହିଁ ଥିଲା କେବଳ ମୋ ଭାବନାରେ । ମନ ହେଉଥିଲା ମାନୁ କୋଳରେ ମୁଣ୍ଡରଖି ଶୁଅନ୍ତି । ଗୁଣୁଗୁଣୁ ହୋଇ ସେ ମୋର ମଥାର କେଶ ସାଉଁଳାଇ ଦେଉଥାଆନ୍ତା । ତା'ର ସେଇ ସ୍ପର୍ଶରେ ମୁଁ ନିଦରେ ହଜିଯାଆନ୍ତି ।

ମୁଁ ପିଣ୍ଡାରେ ବସିଥିବାରୁ ମୋତେ ଅଡୁଆ ଲାଗୁଥିବ ବୋଲି କଲ୍ୟାଣୀ ବୁଝିପାରିଲା ବୋଧେ । ସ୍ତ୍ରୀ ଲୋକମାନେ ଏମିତି ବୁଦ୍ଧିମତୀ ହେବା ନିହାତି ଦରକାର । ଅନ୍ୟର ମନକଥା ବି ଯେମିତି ଖୁବ ସହଜରେ ବୁଝିପାରୁଥିବେ ।

'ଭିତରେ ବସ ଯାଇ । ଏ ଘର ଦୁଆର ସବୁ ତୁମରି ମ । ତୋ ମାମୁଁ ଘରର କୃପାରେ ହିଁ ତ ଆମେ ବଞ୍ଚି ରହିଛୁ ।'

ମୁଁ ଉଠି ଛିଡ଼ାହେଲି । ମାନୁ ବସିଥିବା ଘର ଭିତରକୁ ଗଲି । ଖୁବ ସମ୍ମାନ

ଦେଖେଇବା ଭଙ୍ଗୀରେ ମାନୁ ଉଠିଯାଇ ଛିଡ଼ା ହୋଇଯାଇ ସେଠୁ ଚାଲିଯିବାପାଇଁ ବାହାରିଲା ।

'ଆଲୋ, ଲାଜ କାହାକୁ କରୁଛୁ ? ସେ କ'ଣ ପର ? ସେ ପରା ଆମ ଦୁର୍ଗାର ପୁଅ !'

ମୋ ମାଆର ବାପଘର ନାଁ ଦୁର୍ଗା । ବାହାଘର ପରେ ତ ତା' ନାଁ ବଦଳି ଯାଇଛି । ଏଠି କିନ୍ତୁ ସେ ଏବେବି ସେଇ ଦୁର୍ଗା ।

'ତୁମ ଘରେ ତୋ ମାଆ ନାଁ ପଦ୍ମାବତୀ, ନୁହେଁ ?'

'ହଁ, ସବୁକଥା ତା' ହେଲେ ତୁମେ ଜାଣିଛ ।'

କଲ୍ୟାଣୀ ହସିଦେଇ କହିଲା, 'ଏଥିରେ ଆଉ ଜାଣି ନପାରିବା ଭଳିଆ କ'ଣ ଅଛି ?'

ମୁଁ ଖଟ ଉପରେ ବସିଲି । ମାନୁ ପୁଣିଥରେ ସେଇଠି ତଳେ ବସି ପଡ଼ିଲା, କାନ୍ଥକୁ ଆଉଜି । ଛାତି ଉପରଯାଏ ଆଣ୍ଠୁ ଯାକି ବସିଥିଲା । ଆଣ୍ଠୁ ଉପରେ ଦୁଇହାତକୁ ଛନ୍ଦି ତା' ଉପରେ ମୁହଁରଖି ବସିଥିଲା । ମୋତେ ଲାଗୁଥିଲା ସେ ମୋ ଆଡ଼େ ଚାହିଁବ । ସିଧା ଭାବରେ ହଉ କିମ୍ବା ଲୁଚି ଲୁଚି କଣେଇ କଣେଇ । କିନ୍ତୁ ନାଁ, ତା'ର ଲକ୍ଷ୍ୟ ଥିଲା ତା' ନିଜ ପାଦର ନଖ ଉପରେ । ମଞ୍ଜୁଆତି ରଙ୍ଗରେ ରଙ୍ଗାଇଥିବା ସେ ନଖ ଉପରେ ମୋ ଦୃଷ୍ଟି ବି ଯାଇ ଅଟକି ଗଲା ।

କଲ୍ୟାଣୀ କବାଟ ପାଖରେ ବସିଥିଲା ଡାହାଣ ପାଦକୁ ଲମ୍ବେଇ ଦେଇ । ବାମ ପାଦଟି ଡାହାଣ ଜଂଘ ଉପରେ ଥିଲା । ବାଁ ପାଦ ବୁଢ଼ା ଆଙ୍ଗୁଠିରେ ସୂତା ଲଖେଇ ଦେଇ ସେ ଜୁଇକଢ଼କୁ ଗୁନ୍ଥୁଥିଲା ଫାସ ପକେଇ । କାଲି ମାନୁ ଗୁଣୁଗୁଣୁ ହେଉଥିବା ଗୀତଟିକୁ ଆଜି କଲ୍ୟାଣୀ ଗୁଣୁଗୁଣୁ କରୁଥିଲା ।

'ଜୁଇଫୁଲର ଗଜରା ମାଳ କରୁଛ ?'

'ଛୁଞ୍ଚିରେ କ'ଣ ସୁତା ଆଉ ପୁରେଇ ପାରୁଛି ଯେ ଗଜରା କରିବି ? ଆଖିକୁ ଆଉ ସ୍ପଷ୍ଟ ଦିଶୁନି । ଗୋଟିଏ ଆଖିରେ ତ ମୋତିଆ ବିନ୍ଦୁ ହୋଇ ଗଲାଣି !'

ଭାବିଲି, କଲ୍ୟାଣୀକୁ ସାଥୀରେ ମୁମ୍ବାଇ ନେଇ ତା'ର ଆଖି ଅପରେସନ କରିଦେଲେ କେତେ ଭଲ ହୁଅନ୍ତା ! ମୋର ପ୍ରଥମ ଦରମା ସେଇଥିରେ ଖର୍ଚ୍ଚ କରନ୍ତି !

ଜୁଇଫୁଲର ତୀବ୍ର ବାସ୍ନାରେ ସେ ଘର ସାରା ମହକି ଉଠୁଥିଲା । ମୋର ଆଉ କଥା କହିବା ପାଇଁ ଇଛା ହେଉ ନଥିଲା । ସେ ବାସ୍ନା ଭିତରେ ସେମିତି ଚୁପଚାପ

ବସି ରହିବାକୁ ମନ ହେଉଥିଲା ।

'ଯା' ନାଁ କ'ଣ ?' ମୁଁ ପଚାରିଲି ମାନୁ ଆଡ଼େ ଦୃଷ୍ଟି ପକାଇ । ମୋ କଥାରେ ମାନୁ ହସିଦେଲା । ବାଃ, କି ସୁନ୍ଦର ଦିଶୁଛି ସେ ହସିଲା ବେଳେ ! କଲ୍ୟାଣୀର ହିଁ ଅବିକଳ ନକଲ । ତରୁଣୀ ବୟସରେ ଏ ଆକର୍ଷଣୀୟ ରୂପ... !

'ତାକୁ ଆମେ ମାନୁ ବୋଲି ଡାକୁ । କିନ୍ତୁ ପ୍ରକୃତରେ ତା ନାଁ ମହାନନ୍ଦା ।' କଲ୍ୟାଣୀ ଏତିକି କହି ମାନୁ ଆଡ଼େ ଚାହିଁ ହସିଲା ଏବଂ ମୋତେ ପୁଣି ପଚାରିଲା,

'ଏବେ ତୁ ମୁମ୍ବାଇରେ କଣ କରୁଛୁ ?'

'ମୁଁ ଏମ୍. ଏ. ପାସ କରି ସାରିଛି ।'

'ମାନେ ବହୁତ ପାଠ..... ନାଁ... ?'

'ହଁ ।'

ତାକୁ ଯେ ପାଠପଢ଼ା ବିଷୟରେ କିଛି ଜଣା ନାହିଁ ସେକଥା ମୁଁ ଭଲଭାବରେ ଜାଣିଥିଲେ ସୁଦ୍ଧା କେବଳ ମାନୁକୁ ଜଣେଇବା ଉଦ୍ଦେଶ୍ୟରେ ମୁଁ ମୋ ପାଠପଢ଼ା କଥା, ଏମ୍.ଏ. ପାସ କରିବା କଥା କହିଥିଲି ।

'ଆରେ ବାବୁଲ, ତୁ ମରାଠୀ ପଢ଼ିଛୁ ତ ?'

'ହଁ ।'

'ଆମ ମାନୁର ବହି ପଢ଼ିବାରେ ଭାରି ନିଶା ।'

'ବାଃ, କ'ଣ କ'ଣ ପଢ଼ିଛ ସବୁ ?' ମୁଁ ମାନୁ ଉଦ୍ଦେଶ୍ୟରେ ପ୍ରଶ୍ନ କଲି ।

'ମୁଁ.... ଭାଷାକାଳ.. ଇତ୍ୟାଦି ପଢ଼ିଛି.... ।' ମୁହଁ ତଳକୁ କରି ମାନୁ କହିଲା ।

'ବହୁତ ଭଲ !' ମୁଁ ସାବାସି ଦେଲି ।

'କିନ୍ତୁ ଏ ଗାଁରେ କୋଉଠୁ ଗୋଟେ ବହି ମିଳିବ ଯେ !' କଲ୍ୟାଣୀ ମୋ ମୁହଁକୁ ଅନେଇ କହିଲା ।

'ପୋଷ୍ଟ ମାଷ୍ଟରଙ୍କ ପାଖରୁ ବହି ମିଳୁଥିଲା ପଢ଼ିବା ପାଇଁ ।' ମାନୁ କହିଲା ।

'କାହା ପାଖରୁ ?' ମୁଁ କାବା ହୋଇ ପଚାରିଲି ।

'ଏଇଠି ଯେଉଁ ପୋଷ୍ଟମାଷ୍ଟର ଥିଲେ ମ.... ଆଲୋ ମାନୁ, କ'ଣ ତାଙ୍କ ନା କହିଲୁ ।'

'ଆପ୍ଟେ ମାଷ୍ଟର ।' ମାନୁ କହିଲା ।

'କେମିତି ଲୋକ ସେ ?'

'ବୟସ୍କ ଲୋକ । ଏଇଠୁ ରିଟାୟାର ହୋଇଗଲେ ।' କଲ୍ୟାଣୀ କହିଲା ।

'କିନ୍ତୁ ଭାରି ବିଦ୍ୱାନ ଲୋକ ଥିଲେ ।'

ତାଙ୍କର ବି ଭାରି ବହି ପଢ଼ିବାର ନିଶା ଥିଲା ବୋଲି ମାନୁ କହିଲା ।

'କ'ଣ ହେବ ଆଉ, ସେ ଗଲାଦିନଠାରୁ ମାନୁର ବହିପଢ଼ା ପୁରା ବନ୍ଦ ହୋଇ ଯାଇଛି । କେଉଁଠୁ କିଏ ତାକୁ ବହି ଆଣି ଯୋଗେଇବ ?'

'ମୋ ପାଖରେ ଏଇଠି ଦୁଇ ଚାରୋଟି ଉପନ୍ୟାସ ଅଛି । ଦେବି ।'

'କି ବହି ? ନାଁ କ'ଣ କହିଲ ?' ମାନୁ ଖୁବ ଆଗ୍ରହରେ ପଚାରିଲା ।

'ଫଡ଼କେଙ୍କ ବହି ସବୁ । ଆଗରୁ ପଢ଼ିଛ ?'

'କୁଲ୍ୟାବ୍ୟାଚା ଦାଣ୍ଡୀ' ବହିଟି ପଢ଼ିଛି ।'

'ହଉ, ଏବେ 'କାଶ୍ମୀରୀ ଗୁଲାବ' ଆଣି ଦେବି ।'

କଲ୍ୟାଣୀ ଜୋରରେ ହସିଦେଲା । ମାନୁ ଲାଜେଇ ଗଲା ।

'ଆଲୋ ମାନୁ, କାକରା ଆଣି ଦେ ।'

କଲ୍ୟାଣୀ କଥା ଶୁଣି ମାନୁ ସେଠାରୁ ଉଠିଗଲା ଏବଂ ମୋରି ଆଗଦେଇ ଭିତରକୁ ଚାଲିଗଲା । ମୋତେ ଲାଗିଲା ମୋ ସାମନାରେ ଗୋଟିଏ ଫୁଲପେନ୍ଥା ତା'ର ବାସ୍ନା ଚହଲାଇ ଚାଲିଗଲା କି ଆଉ ।

ଗୋଟିଏ ପ୍ଲେଟରେ ଦୁଇଟି କାକରା ନେଇ ମାନୁ ଆସିଲା । ଗୁଡ଼ରେ ନଡ଼ିଆକୋରା ଭଜା ହୋଇ ପୁର ଦିଆଯାଇଥିଲା । ମୋତେ ବହୁତ ଭଲ ଲାଗିଲା ।

'ଏଠି, ଆମର ଏ ଗାଁରେ କ'ଣ ବା ନାହିଁ, କହିଲ ? କିନ୍ତୁ ଏ ଝିଅର କୌଣସି କଥାରେ ଆଗ୍ରହ ନାହିଁ ।'

'ତାକୁ ମୁମ୍ବାଇ ନେଇ ଯାଉନ ?'

ମାନୁ ହସିଦେଲା ମୋ କଥା ଶୁଣି । ତା' ସହିତ କଲ୍ୟାଣୀ ମଧ ହସିଲା । ମୁଁ ମନେ ମନେ ହସୁଥିଲି । ମୁହୂର୍ତ୍ତକ ପାଇଁ ଲାଗିଲା ସତେ କି ମାନୁ ମୋ ସହିତ ମୁମ୍ବାଇ ଚାଲିଯିବ ।

'ଆରେ ବାବୁଲ, ଆମେ କେମିତି ମୁମ୍ବାଇ ଯିବା କଥା ଭାବିବୁ ? ଠାକୁରଙ୍କ ସେବା ଛାଡ଼ି ଆମେ କ'ଣ କୁଆଡ଼େ ଯାଇପାରିବୁ ?'

କଲ୍ୟାଣୀ ଏତିକି କହିବା ଭିତରେ ତା'ର ଗୋଟାଏ ମାଳ ସରିଗଲା । ଭାବିଲି ମାଳଟି ନେଇ ସିଧା ମାନୁର ବେଣୀରେ ଲଗେଇ ଦେବ କଲ୍ୟାଣୀ ।

କିନ୍ତୁ କଲ୍ୟାଣୀ ମୋ ଆଡ଼େ ଚାହିଁ କହିଲା, 'ରାତି ହୋଇଗଲାଣିରେ, ତୁ ଯାଆ ଏଥର । ବେଶୀ ଅନ୍ଧାର ହେଲେ ଜନ୍ତୁଜନ୍ତା ଗୋଡ଼ ତଳକୁ ଆସିଯିବେ । କାଲି

ଆସିବୁ । ଆସିଲାବେଳେ ସାଙ୍ଗରେ ବହି ନେଇ ଆସିବୁ । ଦିନ ଥାଉ ଥାଉ ଆସିବୁ ଯେ ଏଠି ଘଡ଼ିଏ ଦି ଘଡ଼ି ବସି ପାରିବୁ । ଗପସପ କରିବା । ଦୁର୍ଗାର ପୁଅ ତୁ । ତୁ କ'ଣ ଆମର ପର ହୋଇଚୁ ? ମୁମ୍ବାଇ କଥା ଆମକୁ କହିବୁ ସବୁ । ଆମେ ଶୁଣିବୁ । ଏଠି କିଏ ଆମକୁ ମୁମ୍ବାଇ କଥା କହିବ ?'

ମୁଁ ଉଠି ଛିଡ଼ା ହେଲି ।

'କାଲି ବହି ନେଇ ଆସିବି ।'

'ହଁ ଆସିବୁ ନିଶ୍ଚୟ ।'

ଆସୁ ଆସୁ ପିଣ୍ଡାର କୋଣକୁ ଥୁଆ ହୋଇଥିବା ବସ୍ତା ଉପରେ ମୋ ଆଖି ପଡ଼ିଗଲା । ମୋ ନାଁ ଲେଖାହୋଇଥିବା ବସ୍ତା ଯେଉଁଥିରେ ନଡ଼ିଆ ପଶିଥିଲା, ସେଇଟା ସେଇଠି ଥୁଆ ହୋଇଥିଲା । ମୁଁ ଚମକି ପଡ଼ିଲି । ମଜାରେ କହିଲି, 'ଏଠିତ ମୋ ନାଁ ଅଛି ।'

'କେଉଁଠିରେ ?'

'ଏଇ ବସ୍ତାରେ ଦେଖନ୍ତୁ -'

'ଆଲୋ ମାନୁ, ପଢ଼ିଲୁ ଦେଖି -'

ମାନୁ ପଢ଼ିବା ପାଇଁ ନଇଁ ପଡ଼ିଲା । 'ବାବୁଲ ନାଥ' କିନ୍ତୁ ସେ ଚୁପଚାପ ପଢ଼ିଲା । ପାଟିକରି ନୁହେଁ । ପଢ଼ିସାରି ଲାଜେଇ ହସିଦେଲା । କଲ୍ୟାଣୀ ବି ହସିଦେଲା । ହାତରେ ଧରିଥିବା ଜୁଇଫୁଲର ହାରଟିକୁ ମୋ ହାତରେ ଧରେଇ ଦେଲା ।

ମାଳଟିକୁ ପଞ୍ଜାବୀ ପକେଟରେ ରଖି ମୁଁ ବାହାରିଲି । ଟିକିଏ ଆଗକୁ ଆସିଛି କି ନାହିଁ ମାଳଟି ପକେଟରୁ ବାହାର କରି ହାତରେ ଗୁଡ଼େଇ ଦେଲି । ମାଳରୁ ଆସୁଥିବା ବାସ୍ନା ଶୁଂଘି ଶୁଂଘି ରାସ୍ତାରେ ଆଗେଇଲି । ଗୋଟିଏ ଅପୂର୍ବ ପ୍ରକାରର ପ୍ରତିକ୍ରିୟା ମୋ ଭିତରେ ମୁଁ ଅନୁଭବ କଲି ପ୍ରଥମଥର ପାଇଁ ।

ସେତିକିବେଳେ ସାମ୍ନାରୁ, ଅନ୍ଧାର ଭିତରୁ ଆବାଜ ଶୁଭିଲା ।

'କ'ଣ ଘରକୁ ଯାଉଛୁ ?'

'ହଁ ।'

ମୁଁ ଟର୍ଚ୍ଚ ଜଳେଇ ଦେଖେ ତ ଆଗରେ ମାମୁଁ । ମାମୁଁ ବୋଧେ ମନ୍ଦିର ଆଡ଼େ ଯାଉଥିଲେ । ପଞ୍ଜାବୀର ପୁରାହାତ ଭିତରେ ମାଳଟି ଲୁଚି ଯାଇଥିଲା । ଓହୋଃ, ବଞ୍ଚିଗଲି !

ଘରପାଖ ହୋଇଯିବାରୁ ମାଳଟିକୁ ହାତରୁ ବାହାର କରି ମୁଁ ପୁଣି ପକେଟରେ ରଖିଦେଲି । ଘରେ ପହଞ୍ଚି ଆଗ ଆଟୁଘର ଭିତରକୁ ପଶିଗଲି । ସେ ଘରର ଗୋଟିଏ କୋଣରେ ରଖାଯାଇଥିବା ବ୍ୟାଗ ଖୋଲି ମାଳଟିକୁ ତା' ଭିତରେ ରଖିଦେଲି । ତା'ପରେ ଯାଇ ଗୋଡ଼ହାତ ଧୋଇଧାଇ ହୋଇ ଆସିଲି ।

'କୁଆଡ଼େ ଯାଇଥିଲୁ କିରେ ?' ମାଇଁ ପଚାରିଲେ ।

'ସମୁଦ୍ର କୂଳ ଆଡ଼େ ଯାଇ ଆସିଲି ।'

'ବାଃ, ଜୁଇଫୁଲର ବଢ଼ିଆ ବାସ୍ନା ହଉଛି ତ ।'

ମୁଁ କିଛି ନ କହି ଚୁପ ରହିଲି । ଛାତିଟା କିନ୍ତୁ ଧଡ଼ଧଡ଼ ହେଉଥିଲା ।

ତା'ର ବହୁତ ସମୟ ପରେ ମାମୁଁ ଆସିଲେ । କୋଟ, ପଗଡ଼ି ଓହ୍ଲେଇ ଖୁଣ୍ଟିରେ ଟଙ୍ଗେଇ ଗୋଡ଼ ଧୋଇବା ପାଇଁ କୂଅମୂଳକୁ ଗଲେ । ହଠାତ କ'ଣ ମୋ ମନକୁ ଆସିଲା କେଜାଣି, ଉଠିଯାଇ ମାମୁଁଙ୍କ କୋଟ ପକେଟ ଭିତରେ ହାତ ପୁରେଇଲି । ସେଥିରେ ବି ଗୋଟିଏ ଜୁଇର ମାଳ ଥିଲା । ଓଃ, ଏଇଥିପାଇଁ ତା' ହେଲେ କଲ୍ୟାଣୀ ମୋତେ ସେଠୁ ତରତର କରି ଉଠେଇ ଘରକୁ ପଠେଇ ଦେଲା ଏତେ ଶୀଘ୍ର !

ସେଇ ବାସ୍ନା ଆସୁଥିଲା । କିନ୍ତୁ ମୋତେ ଆଉ ସେ ବାସ୍ନା କାହିଁକି କେଜାଣି ଭଲ ଲାଗିଲା ନାହିଁ ।

*

ଟ୍ରଙ୍କଟା ପରଦିନ ଖୋଲି ଦେଉ ଦେଉ ଜୁଇଫୁଲର ବାସ୍ନାରେ ମହକି ଗଲା ସାରା ଘରଟା । କଲ୍ୟାଣୀ ଦେଇଥିଲା ସେ ମାଳଟି । ଏବେ କିନ୍ତୁ ମାଳଟିରେ ଫୁଲ ସବୁ ଝାଉଁଳି ଶୁଖି ଯାଇଥିଲା । ମାଳଟି ଯଦି ସେ ମୋତେ ନଦେଇ ସେତିକିବେଳେ ମାନୁ ବେଣୀରେ ଲଗେଇ ଦେଇଥାଆନ୍ତା ସେ ମହକର ମାଦକତା କେତେ ବଢ଼ିଯାଇଥାଆନ୍ତା ! କେବଳ ସେତିକି ଭାବିଲା କ୍ଷଣି ହୃଦୟ ବୀଣାର ତାର ତରଙ୍ଗାୟିତ ହୋଇ ଉଠୁଥିଲା ।

ମଝିଘର ଡ଼େଇଁ ମାଇଁ ବାହାରକୁ ଆସୁଥିଲେ । ମୁଁ ଥିବା ଘରର ବନ୍ଦ ଉପରେ ଛିଡ଼ା ହୋଇଗଲେ ଗୋଟିଏ ପାଖକୁ ଡ଼େରି ହୋଇ । ତାଙ୍କୁ ଦେଖି ମୁଁ ଚମକି ପଡ଼ିଲି । ଟ୍ରଙ୍କରୁ ଚଟକରି ଦୁଇଟା ବହି ବାହାର କରି ଦେଇ ଟ୍ରଙ୍କକୁ ସାଙ୍ଗେ ସାଙ୍ଗେ ବନ୍ଦ କରିଦେଲି । ଜୁଇଫୁଲର ବାସ୍ନା ତାଙ୍କ ନାକକୁ ଛୁଇଁବା ମାତ୍ରେ ପ୍ରଶ୍ନର ଗୋଟିଏ ଲମ୍ବା ତାଲିକା ବାହାରିବ ବୋଲି ଭୟ ହେଉଥିଲା । କିନ୍ତୁ ସେ କ'ଣ ଚୁପ ରହିବା ଲୋକ ? ସେ ପଚାରିଲେ 'କି ବହି କିରେ ସେଗୁଡ଼ା ?'

'ଉପନ୍ୟାସ ।'

'ବାହାରକୁ ଯାଉଛୁ କି ?'

'ହଁ ।'

'କୁଆଡ଼େ ?'

'ମନ୍ଦିରଯାଏ ଯାଇ ଆସୁଛି ।'

'ଏତେ ସକାଳୁ ? ପୁଣି ବହି ନେଇ କ'ଣ ମନ୍ଦିର ଯାଉଛୁ ?

'ସେଇଠି ଦରି ଉପରେ ବସି ପଢ଼ିବି । ବଢ଼ିଆ ପବନ ସେଠି ।'

'ମନ୍ଦିରରେ ଯାଇ କ'ଣ ବହି ପଢ଼ିବୁ ? ଏଇଠି ଆମରି ଦୁଆରେ ବସି ପଢ଼ ।'

ମାଈଁ ସେତିକିରେ ବି ବନ୍ଦ ହେଲେନାହିଁ । ଲଖୋବାକୁ କହି ଦୁଆରେ ଗୋଟିଏ ଆରାମ ଚେୟାର ପକେଇ ଦେଲେ।

ମୋର ଆଉ ଉପାୟ ନଥିଲା କିଛି । ବାଧ ହୋଇ ଆରାମଚେୟାରରେ ବସିଲି । ବହି ଖୋଲି ପଢ଼ିବାର ଛଳନା କଲି । ବହୁତ ସମୟ ଯାଏ ସେମିତି ବହି ଧରି ବସିରହିଲି । କିନ୍ତୁ ମନେମନେ କେବଳ ମାନୁକଥା ହିଁ ଭାବୁଥିଲି । ଜୀବନଟା କେମିତି କଟନ୍ତା ! ମନେ ମନେ କଳ୍ପନା କରୁଥିଲି ମାନୁକୁ ସାଥୀରେ ଧରି ସମୁଦ୍ର କୂଳକୁ ବୁଲିବାକୁ ଯାଉଛି । ମାନୁ ନଅଗଜ ଶାଢ଼ୀ ପିନ୍ଧି ମୁଣ୍ଡରେ ଓଢ଼ଣା ଦେଇ ଲାଜେଇ ଲାଜେଇ ମୋ ସହିତ ଚାଲିଛି । ମଝିରେ ମଝିରେ ମୋ ଦେହ ସହ ତା ଦେହ ବାଜିଯାଉଛି । ସେ ସ୍ପର୍ଶ ସହିତ ଦେହରେ ଶୀହରଣ ଖେଳିଯାଉଛି । ମଝିରେ ମଝିରେ ଧୀର କରି କ'ଣ କହି ଦେଉଛି ମାନୁ । ତା'ର ମଧୁର ସ୍ୱର କାନକୁ ଆହୁରି ମିଠା ଲାଗୁଛି । କଜଳ କଳାକେଶର କବରୀରେ ଜୁଇଫୁଲର ଲମ୍ବା ଗଜରା ସଜେଇ ବାନ୍ଧିଛି । ସେ ଗଜରାର ମହକରେ ମନଟା କେଉଁଠି ଯାଇ ହଜିଯାଉଛି ଜାଣିପାରୁନି । ସେମିତି ସମୁଦ୍ର କୂଳେ କୂଳେ ଆମ୍ବତୋଟା ଭିତରେ ଗଛଲଟା ଗହଳରେ କୁଆଡ଼େ କୁଆଡ଼େ ବୁଲୁଛୁ । ସମୁଦ୍ରକୂଳ ବାଲି ଉପରେ ବସି ବାଲିର ଘର ତୋଳୁଛୁ । ଭବିଷ୍ୟତର ସ୍ୱପ୍ନକୁ ସେଇ ଘର ଭିତରେ ଦେଖୁଛୁ । ସମୁଦ୍ର ଲହରୀର ଘୋ ଘୋ ଶବ୍ଦ ଭିତରେ ବି ମାନୁ ତଳକୁ ମୁହଁକରି ଗୁଣୁ ଗୁଣୁ ହୋଇ କ'ଣ ଗୋଟେ ଗୀତ ଗାଉଛି । .... ବାସ୍ତବରେ କିନ୍ତୁ ଏସବୁ କିଛି ବି ସମ୍ଭବ ନଥିଲା । କେବଳ ତାଙ୍କ ଘର ଦୁଆର ମୁହଁ ଦେଇ ମନ୍ଦିରକୁ ଯିବାକୁ ପଡ଼ିବ ବୋଲି ମନ ଥିଲେ ବି ମନ୍ଦିରକୁ ଯାଇ ପାରୁନାହିଁ । ହାତ ପାଦ ମନ ସବୁ ଯେମିତି ବାନ୍ଧି ହୋଇ ପଡ଼ିଛି – କିଛି ଗୋଟାଏ କରିବାର ସ୍ୱାଧୀନତା ନାହିଁ ।

ବସି ବସି ବିରକ୍ତ ଲାଗିଲା । ତେଣୁ ଖୋଲା ବହିଟିକୁ ହାତରେ ଧରି ଅଗଣାରେ ଏପଟ ସେପଟ ହେବାକୁ ଲାଗିଲି । ତୁଳସୀ ଚଉରା ପାଖ ହୋଇଯିବାରୁ ଜୁଇଫୁଲର ବାସ୍ନା ଆସି ନାକରେ ବାଜିଲା । ଅନେଇ ଦେଖେ ତ ତୁଳସୀ ମୂଳରେ ଜୁଇଫୁଲର ହାର ପଡ଼ିଥିଲା । ଫୁଲ କିନ୍ତୁ ମଉଳି ଯାଇଥିଲା । ବୋଧହୁଏ କଲ୍ୟାଣୀ ଦେଇଥିବା ମାଳଟିକୁ ମାମୁଁ କାଲି ରାତିରେ ତୁଳସୀ ମୂଳରେ ପକେଇ ଦେଇଥିଲେ । ନିର୍ମାଲ୍ୟ ରୂପେ ମାଟିରେ ମିଶିଯିବା ପାଇଁ ମାଳଟି ସେଇଠି ପଡ଼ିରହିଥିଲା । ସେଠି ମନ୍ଦାରଫୁଲ ବି ପଡ଼ିଥିଲା ଦୁଇ ତିନୋଟି । ପ୍ରତିଦିନ ନନା ପୂଜା କରିବାକୁ ଆସି ଚଉରାରେ ଫୁଲ ଚଢ଼େଇ ଥାଆନ୍ତି । ମାଇଁ ବି ଗାଧୋଇସାରି ତୁଳସୀ ପୂଜା କରନ୍ତି । ଏଠି ଯଦି ସେ ଏବେ ଗଜରାଟିକୁ ଦେଖିବେ ତାଙ୍କ ମନରେ ସନ୍ଦେହ ଆସିବନି ? କିନ୍ତୁ କ'ଣ ବା କରି ପାରିବେ ସନ୍ଦେହ ହେଲେ ସୁଦ୍ଧା ? କିଛି କରିବାର ସାମର୍ଥ୍ୟ ତାଙ୍କର ନାହିଁ । ସେଇଥିପାଇଁ ତ ଶୁଖି ଶୁଖି କଣ୍ଟା ହୋଇ ସାରିଲେଣି ! ଆହୁରି ବି ହେବେ ।

*

ଖରାଟିକେ ନଇଁ ଯିବାରୁ ମୁଁ ଧୀର କରି ଲଖୋବାକୁ ଡାକିଲି ।

'ଲଖୋବା, ତୋ ପାଖରେ ଗୋଟାଏ ଗୁପ୍ତ କାମ ଅଛି । କେହି ଯେମିତି ଜାଣି ନ ପାରନ୍ତି, ବୁଝିଲୁ ତ ?'

'ଏଇ କାମ କରି କରି ତ ଜୀବନ ଗଲାଣି । ସେଥିରେ ନୂଆ କ'ଣ ?'

'ତୋର ଜ୍ୟାକେଟ ଅଛି ନାଁ ? ଆଣିଲୁ ଦେଖି !'

ଲଖୋବା ତା ଫତେଇଟା ପିନ୍ଧି ଆସିଲା ।

'ନେ, ଏ ବହି ଦି'ଟା ପକେଟରେ ରଖିଦେ । ମନ୍ଦିର ପାଖକୁ ଯାଇ ଛିଡ଼ା ହୋଇଥିବୁ । ମୁଁ ପଛେ ପଛେ ଆସୁଛି ।'

'ଯିବି ଯେ, ହେଲେ କାହିଁକି ?'

'ଯେତିକି କହୁଚି ସେତିକି କର । ଚୁପ୍‌ଚାପ୍ । କିଛି ପଚାରନି ।'

'ହଉରେ ବାବା ।'

ଲଖୋବା ବହି ଦୁଇଟିକୁ ପକେଟରେ ରଖି ଗୋଟିଏ ନଡ଼ିଆ ଖଡ଼ିକାରେ ଦାନ୍ତ ଖୁଣ୍ଟି ଖୁଣ୍ଟି ବାହାରକୁ ଚାଲିଗଲା ।

ଅଳ୍ପ ସମୟପରେ ମୁଁ ହାତରେ ଗୋଟିଏ ବାଡ଼ି ଧରି ବାହାରିଲି । ମାଇଁଙ୍କୁ କହିଲି, 'ଟିକେ ବାହାରକୁ ଯାଇ ଆସୁଛି ।'

'ଏ ଖରାବେଳଟାରେ କୁଆଡ଼େ ବାହାରିଲୁ ?'

ମାଈଁଙ୍କ ପ୍ରଶ୍ନରେ ମୋତେ ରାଗ ଲାଗୁଥିଲେ ବି ରାଗିବା ସମ୍ଭବ ନଥିଲା । କହିଲି, 'ଏଇ ଟିକିଏ ମାନୁ ପାଖକୁ ଯାଉଛି ।'

'କାହା ପାଖକୁ ? ମାନୁ ପାଖକୁ ?'

ମାଈଁଙ୍କର ଏ ଆକସ୍ମିକ ପ୍ରଶ୍ନରେ ମୁଁ ଚମକି ପଡ଼ିଲି । ଭିତରେ ଭିତରେ ହଡ଼ବଡ଼େଇ ଗଲି । କିନ୍ତୁ ନିଜକୁ ସମ୍ଭାଳି ଉତ୍ତର ଦେଲାବେଳକୁ ଛାତି ଧଡ଼ଧଡ଼ ହେଉଥିଲା ।

'କୋଉ ମାନୁ ?' ନ ଜାଣିଲା ଭଳି ପଚାରିଲି ।

ମାଈଁ କିଛି ଉତ୍ତର ଦେଲେ ନାହିଁ । କେବଳ ମୋ ମୁହଁକୁ ଚାହିଁ ରହିଲେ । ଅନ୍ଧକୁ ଦୃଷ୍ଟି ନମିଳିଲା ଭଳି ଭାବ ଥିଲା ସେ ଚାହାଣୀରେ । ମୁଁ ଭିତରେ ଭିତରେ ମରି ଯାଉଥିଲି ଯେମିତି ।

'କୋଉ ମାନୁ ?' ମୁଁ ଓଲଟା ପ୍ରଶ୍ନ କଲି ।

'ତୁ ଏଇନେ କୁଆଡ଼େ ବାହାରିଛୁ ଆଗ କହିଲୁ ?'

'ସେ ବଜାର ପାଖରେ ମୋର ଗୋଟିଏ ସାଙ୍ଗ ରହେ । ତା ନାଁ ହେଲା ମନୁ ରେଗେ । ତା'ରି ପାଖକୁ ଯାଉଛି ।'

'ଓଃ !'

'ଟିକେ ଡ଼େରି ହେବ ଆସିବାପାଇଁ ।'

'ସେଇଠୁ ବୋଧେ ମନ୍ଦିର ଆଡ଼େ ଯିବୁ ।'

'ହଁ, ଠାକୁରଙ୍କ ହୁକୁମ ଆଣିବାର ଅଛି ।'

'କେମିତି ହୁକୁମ କିରେ ?' କ'ଣ ବାହାଘର ବିଷୟ ?'

'ଧେତ୍, ଚାକିରୀ ବିଷୟରେ !' ମୁଁ ଡାହାମିଛ କହିଲି ।

ମାଈଁ କେବଳ ମୋ ମୁହଁକୁ ଅନେଇ ଥିଲେ । ଯାହା କହିଲେ ବି ମୋ କଥାପ୍ରତି ତାଙ୍କର ବିଶ୍ୱାସ ହେଲା ଭଳି ଲାଗୁନଥିଲା । କିନ୍ତୁ ମୁଁ ଆଉ ଅଧିକ କିଛି ନକହି ବୁଲି ପଡ଼ି ବାହାରକୁ ଚାଲି ଆସିଲି ।

ସିଧା ସିଧା ମନ୍ଦିରକୁ ଗଲି । ଲଖୋବା ପାନ ଚୋବେଇ ଚୋବେଇ ମନ୍ଦିର ବାହାରେ ଛିଡା ହୋଇ ମୋରି ବାଟକୁ ଲକ୍ଷ୍ୟ କରିଥିଲା । ମୋତେ ଦେଖି ବହି ଦୁଇଟି ବାହାର କରି ମୋ ହାତକୁ ବଢ଼େଇ ଦେଲା । ଏମିତି ଗୋଟେ କାମ ମୋ

ପାଇଁ ଚୁପଚୁପ କରି ଦେଇଥିବାରୁ ତା' ହାତରେ ଦୁଇଅଣା ରଖିଦେଇ କହିଲି,

'ବୁଲା ଦୋକାନରୁ ପକୁଡ଼ି କିଣି ଖାଇଦେବୁ ।'

'ଧେତ୍ !' ପାନ ଛିପ ଛାଟିଦେଇ ଲଖୋବା କହିଲା ।

'ଆଉ ତେବେ କ'ଣ କରିବୁ ଏ ପଇସାରେ ?'

'ଅଣାକର ଚିନି ନେବି । ନ ହେଲେ ଘରଣୀର ପାଟି ଶୁଖିବ । ଆଉ ଅଣାକର ଲଡୁ ନେଇଯିବି ପିଲାମାନଙ୍କ ପାଇଁ । ତୁମରି ନାଁରେ ପିଲାଙ୍କ ପାଟିରେ ମିଠା ଟିକେ ପଡ଼ିବ !'

ଲଖୋବା ବୁଲିପଡ଼ି ଚାଲିଗଲା ।

ତା'ଆଡ଼େ ଚାହିଁ ମୁଁ ମନେ ମନେ ହସିଲି । ସ୍ତ୍ରୀ ଅନ୍ୟ କାହାର ସ୍ତ୍ରୀ - ଲଖୋବାର ନୁହେଁ । ଅନ୍ୟକାହାର ପିଲା - ସେ ମଧ୍ୟ ଲଖୋବାର ନୁହଁନ୍ତି । ସ୍ୱାମୀ ସ୍ତ୍ରୀକୁ ଛାଡ଼ି ଦେଇଥାଉ କିମ୍ବା ସ୍ତ୍ରୀଟି ସ୍ୱାମୀକୁ ଛାଡ଼ିଦେଇ ଚାଲି ଆସିଥାଉ - ଯା ହେଲେ ବି ଲଖୋବା ତା'ର କିଛି ନୁହେଁ । ତା' ଉପରେ ଲଖୋବାର କୌଣସି ପ୍ରକାରର ଦାବୀ ନାହିଁ । କିନ୍ତୁ ସେ ତା ପାଖକୁ ଯାଉଛି । ତା' ପିଲାମାନଙ୍କୁ ସ୍ନେହ ଶ୍ରଦ୍ଧା କରୁଛି । ସେ ଘରର ଭଲମନ୍ଦ ବି ବୁଝୁଛି । ସାରା ଗାଁର ଲୋକେ ଜାଣନ୍ତି ପିଲା ଦୁଇଟିଙ୍କର ବାପ କିଏ । ଅନ୍ୟ ଲୋକେ ବି ସେ ଘରକୁ ଯିବା ଆସିବା କରନ୍ତି । ଲଖେବା ବି କ'ଣ ସେକଥା ଜାଣି ନଥିବ ? ତଥାପି, ସେ ତା' ବାଟରେ ଚାଲିଛି । ତା କୋଳରେ ସେ ପିଲାଙ୍କୁ ଦେଖି ଲୋକେ ଥଟ୍ଟା ମଜ୍ଜା କରନ୍ତି । କିନ୍ତୁ ପିଲାଙ୍କ ମା'ଙ୍କୁ ସେ ତା'ର ଘରଣୀ ବୋଲି କହୁଛି, ଅତି ସହଜ ଭାବରେ । ଅନ୍ୟର ଛୁଆଙ୍କୁ ନିଜ ଛୁଆ ପରି ଆପଣେଇ ନେଇଛି । ସେ ସ୍ତ୍ରୀ ଟି ଯେ କେବଳ ତା'ର ଖାଇବା ପିନ୍ଧିବାର ଆବଶ୍ୟକତା ମେଣ୍ଟାଇବା ପାଇଁ ଲଖୋବାକୁ ଆପଣାର କରିଛି - ସେ କଥା ପ୍ରତି ଲଖୋବାର କୌଣସି ପ୍ରକାରର ଚିନ୍ତା ନାହିଁ କି କୌଣସି ପ୍ରକାର ଅଭିଯୋଗ ବି ନାହିଁ । କେମିତି ଏମିତି ସମ୍ଭବ ହୋଇପାରିଛି ? ଲଖୋବାର କୌଣସି ପ୍ରକାରର ପ୍ରତିକ୍ରିୟା କେମିତି ହେଉନାହିଁ ? ସବୁକିଛି ସତ୍ତ୍ୱେ ବି ତାକୁ ଘରଣୀ ବୋଲି କହିବାକୁ କି ପିଲାମାନଙ୍କୁ ନିଜର ବୋଲି କହିଲା ବେଳକୁ ସେ ଆଦୌ ସଂକୋଚ କରୁନାହିଁ । ଏମିତି ସମସ୍ତେ କରିପାରିବେନି । ଏଥିପାଇଁ ବହୁତ ବଡ଼ ମନଟିଏ ଥିବା ନିହାତି ଆବଶ୍ୟକ ।

ଅନ୍ୟମାନେ ଲଖୋବା ଉପରେ ହସିବା ଭଳି ମୁଁ ବି ହସିଦେଲି ସିନା କିନ୍ତୁ ଦୁଃଖ ଲାଗିଲା । ମଣିଷକୁ ଏତେ ପ୍ରତାରଣା କରିବା ବି କ'ଣ ଠିକ୍ ?

ଲଖୋବା ଦୃଷ୍ଟି ଆଢୁଆଳରୁ ଚାଲିଗଲା ପରେ ମୁଁ ମନ୍ଦିରକୁ ଗଲି । ଦୁଇଥର ପ୍ରଦକ୍ଷିଣା କରି ପାଦୁକ ପାଇଲି । ମନ୍ଦିରର ଗମ୍ଭୀରା ଭିତରକୁ ଲକ୍ଷ୍ୟ କରି ଚାହିଁଲି । କିନ୍ତୁ ସେଠି କେହି ଦୀପ ସଜାଡ଼ିବାର କି ସଳିତା ବଳୁଥିବାର ଦେଖାଗଲା ନାହିଁ ।

ନଥାନ୍ତୁ କେହି ! ମାନୁକୁ ବହି ଦେବାଟା ତ କେବଳ ବାହାନା ଥିଲା । ମୁଁ କଲ୍ୟାଣୀ ଘରର ବାଉଁଶ ଡ଼େଙ୍ଗ ଅଗଣା ଭିତରକୁ ପଶିଲି ।

ପିଣ୍ଡା ଉପରେ ବୁଢ଼ାଟିଏ ବସି ମୃଦଙ୍ଗରେ ଡ଼ୋର ଭିଡୁଥିଲା । ଏକା ଲୟରେ ସେ ତା' କାମ କରୁଥିଲା । ଅନ୍ୟ କାହା ପ୍ରତି ତା'ର ଧ୍ୟାନ ନଥିଲା । ମଝିରେ ମଝିରେ ହାତ ବାଡ଼େଇ ତାଳ ପକାଉଥିଲା । ସେ ତାଳ ଭିତରେ ସେ ବୁଡ଼ି ଯାଉଥିଲା । ତାକୁ ଦେଖି ଭାବିଲି ଘର ଭିତରେ ସେ ହିଁ ବୋଧେ ଏକା ଅଛି । ପିଣ୍ଡା ଆଡ଼କୁ ଛପର ନଇଁ ଆସିଥିଲା । ତେଣୁ ବାହାରୁ ଘର ଭିତର ଭଲ ଭାବେ ଦିଶୁ ନଥିଲା ।

ନଇଁ ପଡ଼ି ସିଧା ଘର ଭିତରକୁ ପଶିଗଲି । ଘର ଭିତରେ ମସିଣା ଉପରେ ବୁଢ଼ାଟିଏ କାନ୍ଥକୁ ଡ଼େରି ହୋଇ ବସି ରହିଥିଲା । ମୋତେ ଦେଖି ଲମ୍ବେଇ ଦେଇଥିବା ଗୋଡ଼ ଦୁଇଟାକୁ ଯାକି ଦେଇ ମୋ ଆଡ଼େ ଚାହିଁଲା । ତା' ସାମ୍ନାସାମ୍ନି କଲ୍ୟାଣୀ ବସିଥିଲା । ଚକା ଆସନ ପକେଇ ଆଖି ବନ୍ଦ କରି ଜପାମାଳ ଧରି ଜପ କରୁଥିଲା । ବୁଢ଼ାଟି କଲ୍ୟାଣୀକୁ ନୀରିକ୍ଷଣ କରି ବସି ରହିଥିଲା ବୋଧେ । ମୁଁ ଆସିବା ପରେ ସେ ଥର ଥର କରି କଲ୍ୟାଣୀର ମୁହଁକୁ ଓ ମୋ ମୁହଁକୁ ଚାହୁଁଥିଲା । କିଛି ସମୟପରେ ପଚାରିଲା, 'କିଏ ?'

ତା'ପାଟି ଶୁଣି କଲ୍ୟାଣୀ ଆଖି ଖୋଲିଲା ।

'ବାବୁଲ, ତୁ ଆସିଛୁ ! ଆ.... ଆ....ବସ....' ସେ ବସିଥିବା ମସିଣା ଉପରେ ବସିବା ପାଇଁ ହାତ ଠାରି କହିଲା ।

'ଉପନ୍ୟାସ ଦୁଇଟା ଦେବାପାଇଁ ଆସିଥିଲି ।'

'ଭଲ କଲୁରେ ବାପା ! ସକାଳୁ ତା ମନ କ'ଣ ଆଉ ଠିକ ଅଛି ? ସେ ପରା ତୋ ବାଟକୁ ଅନେଇ ବସିଛି ।'

'ଏବେ କ'ଣ ବାହାରକୁ ଯାଇଛି ?'

'ନାଇଁ ମ, ଘର ଭିତରେ ଅଛି ।'

ଆଙ୍ଗୁଠି ଦେଖେଇ ମୋତେ ମାନୁର ଘର ଆଡ଼େ ଯିବାପାଇଁ କହିଲା କଲ୍ୟାଣୀ । ମୋର ବି ତ ସେଇ ଇଚ୍ଛା ହିଁ ଥିଲା । ସେ ଦୁହିଁଙ୍କୁ ପଛକରି ମୁଁ ମାନୁ ଥିବା ଘର

ଆଡ଼କୁ ଚାଲିଲି । ପଛରୁ ବୁଢ଼ାର ସ୍ୱର କାନରେ ବାଜିଲା, 'କିଏ କି ?'

'ଆମ ସାଆନ୍ତଙ୍କର ଭଣଜା ପରା ! ମୁମ୍ବାଇରେ ରହେ । ବହୁତ ପାଠ ପଢ଼ିଛି ।'

ବୁଢ଼ା ସବୁ ଶୁଣିଲା । କିଛି ନକହି ତା' କାମରେ ଲାଗିଗଲା । ମୃଦଙ୍ଗର ଠୁଂ ଠାଂ ଆବାଜ ଆସୁଥିଲା ।

ସେ ଘରର ଦୁଆର ମୁହଁରେ ପାଦ ପଡୁ ପଡୁ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କାରଣ ଘରଟିର ପଛପାଖକୁ ଗୋଟିଏ ଛୋଟ କବାଟ ଥିଲା । ଅବଶ୍ୟ କବାଟଟି ବନ୍ଦ ଥିଲା । ଚାଖଣ୍ଡେ ଦେଢ଼ ଚାଖଣ୍ଡ ଚଉଡ଼ାର ଝରକାଟିଏ ବି ଥିଲା । ସେଇ ଝରକା ଦେଇ ସୂର୍ଯ୍ୟଙ୍କର ଅସ୍ତହେବା ସମୟର ତୀର୍ଯ୍ୟକ କିରଣ ଘର ଭିତରେ ପଡୁଥିଲା । ସେଇ ଆଲୁଅରେ ମାନୁ ଦୁଇଟା କଣ୍ଟା ଧରି କ'ଣ ବୁଣାବୁଣିରେ ବ୍ୟସ୍ତ ଥିଲା । ଝରକା ଉପରେ ବେଶ ଗୋଲଗାଲିଆ ବିଲେଇଟିଏ ବସି ନିଜ ଦେହକୁ ଚାଟୁଥିଲା ।

ମାନୁ ମୋ ଆଡ଼କୁ ପଛକରି ବସିଥିଲା । ପଛପଟୁ ଧୀରେ ଧୀରେ ଯାଇ ତା ଆଖି ବନ୍ଦ କରି ଧରିବାକୁ ମନ ହେଉଥିଲା । କିନ୍ତୁ ସେତକ କରିବାର ସାହସ ଆଦୌ ନଥିଲା । ସେତିକିବେଳେ ସେ ବିଲେଇଟିର ଆଖି ମୋ ଉପରେ ପଡ଼ିଯିବାରୁ ମ୍ୟାଉଁ ମ୍ୟାଉଁ ହୋଇ ବୋବେଇବା ଆରମ୍ଭ କରିଦେଲା । ତା ପାଟି ଶୁଣି ମାନୁ ବୁଲିପଡ଼ି ଚାହିଁଲା । ହଠାତ ସେଠି ମୋତେ ଦେଖି ହାତେ ଲମ୍ବା ଜିଭ ବାହାର କରି ଲାଜରେ ଜଡ଼ସଡ଼ ହୋଇପଡ଼ିଲା ଭଳି ହେଲା । କାନ୍ଧ ଉପରେ ଥିବା ପଣତକୁ ଦେହ ଉପରେ ଘୋଡ଼େଇ ଆଣିଲା । ଖୁବ ସଙ୍କଣାରେ ଛିଡ଼ା ହୋଇ ପଡ଼ିଲା । ତା'ର ସେ ଲାଜ ଲାଜ ଭାବ, ଘରୁଆ ଘର ଝିଅଙ୍କପରି ଶାଢୀ ପଣତ ନେଇ ଦେହକୁ ଘୋଡ଼େଇ ଆଣିବା ଆଉ ମୋତେ ସମ୍ମାନ ଦେଇ ଛିଡ଼ା ହୋଇ ପଡ଼ିବା ଏ ସବୁ ମୋ ମନକୁ ଚହଲାଇ ଦେଲା ।

'ଏବେ ଆସିଲ ?'

'ନାଁ, କେତେବେଳୁ ଆସିଲଣି । ଦେଖୁଥିଲି ।'

ସେ ମୁରୁକି ହସିଦେଲା ଏବଂ ପୁଣି ଲାଜେଇ ଗଲା ।

ମୁଁ ଖୁବ ଡ଼େଙ୍ଗା । ହାତ ବଢ଼େଇଲେ ଛପରର ସବା ତଳର ଶେଣୀରେ ମୋ ହାତ ବାଜିବା ଭଳି ଥିଲା । ମୋ ସାମ୍ନାରେ ମାନୁ ଛିଡ଼ାହେଲେ ତା' ମଥା ମୋ ଛାତିରେ ରହିବ । ତା'ର ସେଇ ଉଚ୍ଚତା ମୋତେ ମୁଗ୍ଧ କରିଦେଲା । ଭାବିଲି ମାନୁକୁ ପାଖକୁ ଆଉଜେଇ ଆଣିଲେ ତା ମଥାକୁ ସେ ମୋ ଛାତିରେ ଗୁଞ୍ଜିଦେବ ।

ତା ଚିବୁକକୁ ଧରି ଉଠେଇଲେ ଆଉ ମୋ ମୁହଁକୁ ଟିକେ ତଳକୁ କଲେ ତା' ଓଠକୁ ମୋ ଓଠ ସ୍ପର୍ଶ କରିବ । ଆଦର୍ଶ ଯୋଡ଼ି ଏମିତି ହେବା କଥା ।

'ବସୁନା – ।'

ମୁଁ ସେଇଠି ତଳେ ବସିଗଲି ପାପୁଲିରେ ଭରା ଦେଇ ।

'ଉପରେ – ଖଟ ଉପରେ ବସ ନା ।'

'ନାଇଁ, ଏଇ ତଳେ ବସିବା ପାଇଁ ଭଲ ଲାଗୁଛି ।'

'କାହିଁକି ?'

'ତୁମ ପାଖରେ ବସିଛି ବୋଲି ।'

ସେ ପୁଣି ହସିଦେଲା । ଟିକେ ଛାଡ଼ି ବସିଲା ସେଇଠି । ସେତିକି ବେଳେ ଝରକା ଉପରୁ ଡ଼ିଆଁମାରି ବିଲେଇଟି ଭିତରକୁ ଆସିଲା । ମ୍ୟାଉଁ ମ୍ୟାଉଁ ହୋଇ ସେ ମୋ ଦେହରେ ଘଷିହେଲା । ମୁଁ ତାକୁ ଦୂରକୁ ଛାଟିଦେଲି । ମୋ ପାଖରେ ସେ କୁକୁର ବିଲେଇ ପ୍ରୀତି ଆଦୌ ନାହିଁ ।

'ଆ ଭାଗୀ, ଏଇଠିକି ଆ ।'

ଏମିତି କହି ମାନୁ ବିଲେଇଟିକୁ ତା' ପାଖକୁ ଡାକିଲା । ବିଲେଇଟି ପାଖକୁ ଆସିବାରୁ ତାକୁ ନେଇ କୋଳରେ ବସେଇ ଆଉଁସି ଦେଲା ।

'କ'ଣ ନାଁ ଏଇ ବିଲେଇର ?'

'ଇଏ ହେଲା ଆମ ଭାଗୀ, ମାନେ ଭାଗୀରଥି । କ'ଣରେ ଭାଗୀ, ତୋ ନାଁ କହୁନୁ ?' କହି ଭାଗୀକୁ ସେ ଉପରକୁ ଉଠେଇ ତା ମୁହଁରେ ବୋକ ଦେଇଦେଲା ।

ତାକୁ ଦେଖି ମୁଁ ହଡ଼ବଡ଼େଇ ଗଲି । ଭାବିଲି ଏଇ ମୁହୂର୍ତ୍ତରେ ମୋତେ କେହି ଜାଦୁ କରି ବିଲେଇ କରି ଦିଅନ୍ତାନି । ମାନୁ ମୋତେ ଏମିତି ଗେହ୍ଲା କରନ୍ତା । ମନକଥା ତା' ଆଗରେ ଖୋଲି କହିଦେବି ବୋଲି ଭାବିଲି । କିନ୍ତୁ ସାହସ ହେଲାନି ।

'ଇଏ କ'ଣ, ମୋ ପାଇଁ ଗପବହି ଆଣିଛ ନାଁ କଣ ?'

ମୋ ହାତରେ ଥିବା ବହି ଦେଖି ପଚାରିଲା ମାନୁ । 'ଏ ଫଡ଼କେଙ୍କର ନୂଆ ଉପନ୍ୟାସ ।'

ବହି ଦୁଇଟି ତା' ହାତରେ ଦଉ ଦଉ ସେ ଛଡ଼େଇ ନେଲାପରି ନେଇଗଲା । ଗୋଟିଏ ବହି ଖୋଲି ସାଙ୍ଗେ ସାଙ୍ଗେ ଦେଖିବା ଆରମ୍ଭ କରିଦେଲା । ସେ ବହିକୁ ଅନେଇଥିଲା ଆଉ ମୁଁ ତାକୁ । ଏମିତି ସବୁବେଳେ ହୋଇପାରନ୍ତାନି ? ନାଁ ସମ୍ଭବ

ନୁହଁ । ସାମ୍ନାସାମ୍ନି ଦୁଇଜଣ ବସି କେହି କାହାକୁ କିଛି ନକହି ରହି ହେବ ନାହିଁ । ଭଲ ବି ଲାଗିବନି । କହିଲି, 'ବାହାରେ ମୃଦଙ୍ଗ ଧରି ବସିଥିବା ଲୋକଟି କିଏ ?'

'ସେ ସାତିଆ ମୃଦଙ୍ଗବାଲା ।' ବହି ବନ୍ଦ କରି କହିଲା ସେ ।

'ତୁମର କ'ଣ ସମ୍ବନ୍ଧୀୟ, ବନ୍ଧୁବାନ୍ଧବ ?'

ନାଁ, ନାଁ, ସେ ଆମର କିଛି ନୁହନ୍ତି । କିନ୍ତୁ ଏ ଗାଁ ମନ୍ଦିରର କୀର୍ତ୍ତନମଣ୍ଡଳୀ ଭିତରୁ ସେ ଜଣେ । ତାଙ୍କ ହାତ ବହୁତ ଭଲ । ବହୁତ ଭଲ ମୃଦଙ୍ଗ ବଜାନ୍ତି । ଠାକୁରଙ୍କ ବିମାନ ବାହାରିଲେ ସେ ହିଁ ମୃଦଙ୍ଗ ବଜାନ୍ତି ।

'ଆଉ, ସେ ଘର ଭିତରେ ଯେଉଁ ଲୋକଟା ବସିଛି ?'

ମାନୁ ଲାଜେଇ ଯାଇ ହସିଦେଲା ଏବଂ କହିଲା, 'ସିଏ ପରା ସୋମାଜୀ ମାଷ୍ଟର । ନୂଆ ପୋଷ୍ଟ ମାଷ୍ଟର ।'

'ଏଠିକି କାହିଁକି ଆସିଛନ୍ତି ?'

'ପୋଷ୍ଟ ଅଫିସଟା ଏଇ ପାଖରେ ତ, ସେଇଥିପାଇଁ ପ୍ରାୟ ଆସି ଏଇଠି ବସନ୍ତି ।'

'ଏମିତି ଖାଲିଟାରେ ?'

'ହଁ, ସବୁ ପୋଷ୍ଟ ମାଷ୍ଟର ଆମ ଘରକୁ ଆସି ଏମିତି ବସନ୍ତି ।'

'କିନ୍ତୁ ଏ ସୋମାଜୀ ମାଷ୍ଟର ତ ବୁଢ଼ା ହୋଇଗଲେଣି ।'

'ସେଇଥିପାଇଁ ତ ଏଠିକି ଆସି ଖାଲି ଅନେଇ ବସିଥାଆନ୍ତି ।' କହିଦେଇ ମାନୁ ଖିଲି ଖିଲି ହୋଇ ହସିଦେଲା ।

'ତୁମକୁ ଅନେଇବା ପାଇଁ ଆସନ୍ତି ?'

'ଧେତ୍, ମୋତେ ନୁହଁ... ମାଆକୁ ।' ହସି ହସି କହିଲା ସେ ।

ମୋତେ କିନ୍ତୁ ତା କଥା ଶୁଣି କେଜାଣି କାହିଁକି ଭାରି ହାଲୁକା ଲାଗିଲା ।

'ତା'ହେଲେ ତୁମ ମାଆଙ୍କୁ ତ ପୋଷ୍ଟକାର୍ଡ଼, ଲଫାପା ସବୁ ଫ୍ରିରେ ମିଳୁଥିବ ?'

'ଆମର ସେ ସବୁ କ'ଣ ହେବ ? କାହା ପାଖକୁ ପଠେଇବୁ ସେ ସବୁ ? କିନ୍ତୁ ହଁ, ମଜା ମଜା ଚିଠି ସବୁ ସେ ଆମକୁ ପଢ଼ି ଶୁଣାନ୍ତି ।'

'କାହା ଚିଠି ?'

'ଯାହାର ବି ହଉ । ଗାଁକୁ ଆସୁଥିବା ଚିଠି ସବୁରୁ ପଢ଼ି ଶୁଣାନ୍ତି । ଏ ସୋମାଜୀ ମାଷ୍ଟର ଏ କାମରେ ବେଶୀ ଧୁରନ୍ଧର ନୁହଁନ୍ତି । କେବେ କେମିତି ଆଣନ୍ତି । କିନ୍ତୁ

ଆଗରୁ ଯେଉଁ ପୋଷ୍ଟମାଷ୍ଟର ଥିଲେ ସେ ପ୍ରାୟ ପ୍ରତ୍ୟେକ ଚିଠି ଖୋଲନ୍ତି । ସେ ବଦଳି ହୋଇଯିବା ପରେ ଇଏ ଆସିଲେ ।

'ମାନେ ? କାଲି ଯଦି ମୁଁ ତୁମ ପାଖକୁ ଚିଠି ଲେଖେ ତେବେ ଏ ପୋଷ୍ଟ ମାଷ୍ଟର ଆଗ ସେ ଚିଠି ଖୋଲିବ ?'

'ଆମ ଚିଠି ଖୋଲିବନି ।'

'କାହିଁକି ?'

'ଏଠିକି ଯିବା ଆସିବା କରନ୍ତି ତ ! ସେଇଥିପାଇଁ ।'

ସେ ପୋଷ୍ଟମାଷ୍ଟର ବୁଢ଼ା ଉପରେ ମୋ ରାଗ ଚଢ଼ୁଥିଲା । ଦୁଃଖ ବି ଲାଗୁଥିଲା । ବୟସ ହେଲାଣି ଆସି ପଚାଶ ଉପରେ । ନଇଁ ଯାଇ କୁଜା ଦିଶୁଛି । ଦେହରେ ଟିକିଏ ବି ବଳ ଥିଲା ଭଳି ଦେଖା ଯାଉନାହିଁ । ସିଏ ପୁଣି କଲ୍ୟାଣୀକୁ ଅନେଇବ ଆଉ ତା' ଆଗରେ ଅନ୍ୟମାନଙ୍କର ଚିଠି ଖୋଲି ପଢ଼ିବ ! କ'ଣ ପାଉଥିବ ସେ ସେଥିରୁ !

ମାନୁ ତା' ବୁଣାବୁଣି ଜିନିଷକୁ ପୁଣି ହାତରେ ଧରିଲା ।

'କ'ଣ ତିଆରି ହେଉଛି କି ?'

ଅଧାବୁଣା ରଙ୍ଗ ବେରଙ୍ଗ ତୋରଣ ଗୋଟିଏ ସେ ମୋ ଆଗରେ ଧରି ଦେଖାଇଲା । ଦୁଆର ମୁହଁରେ ଟାଙ୍ଗିଲେ ଖୁବ ସୁନ୍ଦର ଦେଖାଯିବ ।

'ମନକୁ ପାଇଲା ?' ମାନୁ ପଚାରିଲା ।

'ବାଃ, ବଢ଼ିଆ ହୋଇଛି ।' ମୁଁ କହିଲି ।

ତା'ପରେ ସେ ଘର କୋଣରେ ରଖିଥିବା ଗୋଟିଏ ଡବା ଆଣି ତା' ଭିତରେ ଥିବା ଆଉ ଗୋଟିଏ ତୋରଣ ବାହାର କରି ମୋତେ ଦେଖାଇଲା । ଭିନ୍ନ ଭିନ୍ନ ରଙ୍ଗର ମାଳିରେ ତିଆରି ହୋଇଥିଲା ସେଇଟା । ମଝିରେ ମଝିରେ କାଚର ନଳୀ ଲଗେଇ ସୁନ୍ଦର ଡ଼ିଜାଇନ କରିଥିଲା ତୋରଣଟିରେ ।

'ଖୁବ୍ ସୁନ୍ଦର ଦିଶୁଛି ଏଇଟା !' ମୁଁ ଖୁସି ହୋଇ କହିଲି ।

ସେ ବି ଖୁସି ହୋଇଗଲା ମୋ ମନ୍ତବ୍ୟ ଶୁଣି ।

'କବାଟ ସାମ୍ନାରେ ଟାଙ୍ଗିଲେ ଖୁବ ସୁନ୍ଦର ଦିଶିବ ।' ମୁଁ କହିଲି ।

'ଠାକୁରଙ୍କ ବିମାନ ସାମ୍ନାରେ ଟାଙ୍ଗିଲେ ବି ବଢ଼ିଆ ଦିଶିବ, ନୁହେଁ ?' ମାନୁ ପଚାରିଲା ।

'ସତକଥା ତ ।'

'ମୁମ୍ୱାଇ ଗଲାବେଳେ ଏ ତୋରଣଟି ସାଥୀରେ ନେଇଯିବ ।'

'ଆଉ ସବୁ କ'ଣ ନେବି ?'

'କ'ଣ ଦରକାର ଆଉ ?'

'ତୁମେ.... !' ମୁଁ ଆସ୍ତେ କରି କହିଲି ।

ମୋ କଥା ଶୁଣୁ ଶୁଣୁ ସେ ହସିଦେଲା । କିଛି କହିଲାନି ।

'କ'ଣ କିଛି କହିଲନି ଯେ ?'

'ଅଯଥା କଥା କହି ଲାଭ କ'ଣ ?'

'କାହିଁକି ?'

'ମୁଁ ଦେବଦାସୀର ଝିଅ, ଦେବଦାସୀ । ତୁମେ ଘରୁଆ ଘରର ପୁଅ ।'

'ହଉ, ସେଥିରେ କ'ଣ ଅଛି ? ଜନ୍ମ ହେତୁରୁ ବଡ଼ ସାନ ମୁଁ ମାନେନାହିଁ ।'

'କହିବା ବହୁତ ସହଜ ।'

'ହଉ ହେଲା, ଦେଖିବ ଯେ !'

କିଛି ସମୟ ଚୁପ ରହିବା ପରେ ସେ କହିଲା, 'ଦୀପାବଳୀ ଭିତରେ ଏ ତୋରଣଟି ସରିଯିବ ।'

'କାହିଁକି ?'

'ତୁମେ କହୁଥିଲ ଏଇଠି ଦୀପାବଳୀ ସାରି ଯିବ । ମୁଁ ଏଇଟା ତୁମପାଇଁ ବୁଣୁଛି । ତୁମେ ଯିବା ପୂର୍ବରୁ ସରିଗଲେ ହେଲା ।'

'ହେଲେ ଭଲ, ନ ହେଲେ ବି କିଛି ଚିନ୍ତା ନାହିଁ । ମୁଁ ପୁଣି ଡିସେମ୍ବର ମାସରେ ଆସିବି । ବଡ଼ଦିନ ଛୁଟୀ ହେବ ତ !'

'ମୁମ୍ୱାଇରେ ତୁମେ କ'ଣ କର ?'

'କଲେଜରେ ମରାଠୀ ପଢ଼ାଏ ।'

'କ୍ଲାସରେ ଝିଅ ଥାଆନ୍ତି ?'

'ହଁ ।'

'ସୁନ୍ଦର ହୋଇଥିବେ ସମସ୍ତେ.... ।'

ହଠାତ୍ ସେ ତା' ମାଆ ପରି କଣେଇ କରି ଚାହିଁଲା ।

'କିନ୍ତୁ ତୁମ ପରି ଆଜିଯାଏ କାହାକୁ ଜଣକୁ ବି ଦେଖିନାହିଁ ।'

'ମାନେ ?' ସେ ଟିକେ ହସିଦେଇ ପଚାରିଲା ।

'ଏମିତି ହସ ହସ ମୁହଁ, ସୁନ୍ଦର ଗଢ଼ଣ, ମଧୁର ବ୍ୟବହାର ଆଉ ଠାକୁରଙ୍କ ପ୍ରତି ଭକ୍ତି ଥିବା ଝିଅଟିଏ ।'

'ଏତେ କଥା ତୁମକୁ କହିଲା କିଏ ?'

ଚଉରା ସାମ୍ନାରେ 'ଶୁଭମ୍ କରୋତି' ଗାଇବା ବେଳେ ମୁଁ ଶୁଣିଛି ।

ମୋ କଥା ଶୁଣି ଖିଲି ଖିଲି ହୋଇ ହସି ଉଠିଲା ମାନୁ । ଭାରି ଖୁସି ହୋଇଯାଇଥିଲା ବୋଧେ । ହସି ହସି ତା ଆଖିରେ ଲୁହ ଆସି ଯାଇଥିଲା ।

'ତୁମ ସ୍ୱର ବି ଖୁବ ମିଠା -'

'ଥାଉ, ବହୁତ ହେଲାଣି । ମୁଁ ଫାଟିଯିବି ଖୁସିରେ ।'

ଏମିତି ମୁହଁରେ କହିଲା ସିନା କିନ୍ତୁ ମନେ ମନେ ଖୁବ ଖୁସି ହେଉଥିଲା । ତା ଚେହେରାର ଭାବ ଦେଖି ମୁଁ ଜାଣିପାରୁଥିଲି । ସେଇ ସୁଯୋଗକୁ ହାତଛଡ଼ା ନ'କରିବାପାଇଁ କହିଲି, 'ଗୋଟିଏ ସୁନ୍ଦର ଗୀତ ଗାଅନା..... !'

'କ'ଣ ଗାଇବି ?'

'ଯାହା ହେଲେ ବି ଚଳିବ । ଭଜନ..... ଜଣାଣ.....'

ସେ ଗଳା ସଫା କଲା । ସେତିକିବେଳେ କଲ୍ୟାଣୀର ପାଟି ଶୁଭିଲା, 'ମାନୁ, ସାଆନ୍ତେ ଆସିଲେଣି ଲୋ... !'

କଲ୍ୟାଣୀ ବାହାରୁ ପାଟି କରି କହୁଥିଲା ।

'କିଏ - ?' ମୁଁ ଫୁସ ଫୁସ ହୋଇ ପଚାରିଲି ।

ମାନୁ ମୋ ହାତଧରି ଉଠେଇ ନେଇ ଘରର ସେଇ ପଛପଟ କବାଟ ଖୋଲି ବାହାରକୁ ବାହାର କରିଦେଲା ।

'ଯାଅ ଶୀଘ୍ର ଏଇବାଟେ ।' ଆସ୍ତେ ଆସ୍ତେ କହିଲା ସେ ।

ବାହାରେ ସଂଧ୍ୟା ହୋଇ ସାରିଥିଲା ।

'ଆସୁଛି ତା' ହେଲେ ।'

'ହଁ, କିନ୍ତୁ ଆସିବ ନିଶ୍ଚୟ ।'

ମୁଁ ବୁଲି ପଡ଼ିବା ବେଳକୁ ହଠାତ୍ ସେ ମୋର ଏକଦମ ପାଖକୁ ଆସି କହିଲା, 'ଯାତ୍ରା ପରେ ଯିବ । ଦୀପାବଳୀର ଆଠଦିନ ପରେ ଯାତ୍ରା । ଯେମିତି ହେଲେ ବି ଯାତ୍ରା ଯାଏ ରହିବ ।'

'ହଉ ଦେଖିବି ।'

ହଠାତ ସେଠିକୁ ମାମୁଁ ଆସିଗଲେ ଶୁଣି ମୋ ଛାତି ଧକଧକ ବଢ଼ିଗଲା । ତଥାପି ବି ଘରର ପଛପଟ କବାଟ ବାଟେ ବାହାରି ଯେମିତି ସେମିତି ଦୌଡ଼ି ଦୌଡ଼ି ମୁଁ ଘରଯାଏ ଚାଲିଆସିଲି ।

ଘରେ ପହଞ୍ଚିବା ବେଳକୁ ଚାରିଆଡ଼େ ଅନ୍ଧାର ଘୋଟି ଯାଇଥିଲା । ସେତେବେଳ ଯାଏ ମାଈଁ କିନ୍ତୁ ଦୀପ ଲଗେଇ ନଥିଲେ । ନିଜେ ଭୂତ ଭଳି ସେ ଘରେ ଏପଟ ସେପଟ ହେଉଥିଲେ । ମାନୁ ଘରେ ଏବେ ଦୀପ ଲଗା ସରିବଣି । ଚଉରା ପାଖରେ ଦୀପ ଜାଳି ମାନୁ ଏବେ 'ଶୁଭମ୍ କରୋତି...' ବୋଲୁଥିବ । ଗୋଟିଏ ପଟରେ ଏ ଜମିଦାର ଘର ଆଉ ଆର ପଟରେ ଦେବଦାସୀର ଘର । ଫରକ କେବଳ ଏତିକି ଆଉ କ'ଣ ?

ମୋତେ ଅନ୍ଧାରରେ ମୋଟେ ଭଲ ଲାଗେ ନାହିଁ । ମୁଁ ଯାଇ ଲଣ୍ଠନ ଲଗେଇଲି । ଘର ଭିତରେ ଗୋଟିଏ ତକିଆ ଅଣ୍ଟା ପଛରେ ରଖି କାନ୍ଥକୁ ଡ଼େରି ହୋଇ ବସିଲି । ପ୍ରକୃତରେ ମୋତେ ଆଦୌ ଶାନ୍ତି ଲାଗୁ ନଥିଲା । ମନଟା ଛଟପଟ ହୋଇ ଯାଉଥିଲା । ଖୁବ ଅସ୍ଥିର ଲାଗୁଥିଲା । ମନେ ହେଉଥିଲା ମୋର ଡ଼େଣା ଥାଆନ୍ତା କି, ଉଡ଼ିଉଡ଼ି ଯୁଆଡ଼େ ଇଛା କରନ୍ତି ଚାଲି ଯାଆନ୍ତି । ସିଧା ଯାଇ ମାନୁ ଘରେ ପହଞ୍ଚିଯାଆନ୍ତି । ସେଇଠି ବସିରହନ୍ତି ଅସରନ୍ତି କାଳଯାଏ । ସେ ଘରେ କିମିୟା ଅଛି । ସେଠିକାର ସଂପୂର୍ଣ୍ଣ ପରିବେଶ ଏଇନା ଜୁଇଫୁଲର ବାସ୍ନାରେ ଭରି ଯାଇଥିବ । ରାତି ସହିତ ବାସ୍ନା ବି ବଢୁଥିବା ମନକୁ ପାଗଳ କରି ଦେବା ପରି । ଦେହରେ ଶୀହରଣ ହେବା ପରି । ଏ ମାମୁଁଘର କିଛି ନୁହେଁ । କିଛି ବି ନାହିଁ । ରାତି କଟେଇବା ପାଇଁ ଇଏ ଯେମିତି ଗୋଟିଏ ଖୋଲା ଧର୍ମଶାଳା !

'କ'ଣ ମନ୍ଦିରରୁ ଫେରିଲୁ ?'

ମାଈଁ ପଚାରୁଥିଲେ । ଆଦୌ ପାଦ ଶବ୍ଦ ନକରି ମଝିଘର ଅନ୍ଧାର ଭିତରୁ ସେ ଏ ଘରକୁ କେତେବେଳେ ଆସିଲେ ମୁଁ ମୋଟେ ଜାଣି ପାରିଲିନି ।

'ହଁ ।'

'ମାମୁଁଙ୍କୁ ଦେଖିଲୁ କି ?'

'ନାଁ ତ ।'

'ସିଏ ବି ତ ମନ୍ଦିରଆଡ଼େ ଗଲେ ।'

'ଯାଇଥିବେ । ମୁଁ ମନ୍ଦିରରୁ ସିଧା ସମୁଦ୍ରକୂଳକୁ ଚାଲିଯାଇଥିଲି ।'

'ହଉ ।'

ମାଇଁଙ୍କ ସ୍ୱରରୁ ତାଙ୍କ ମନର ଖୁସି ଜଣାପଡୁଥିଲା ।

'ଠାକୁରଙ୍କ ହୁକୁମ ପାଇଲୁ ?'

'ହୁକୁମ – ?'

'ତୁ ସକାଳେ କହୁଥିଲୁ ପରା !'

'ଓଃ, ହଁ ହଁ ହୁକୁମ ଆଣିଲି ପରା ।'

'କ'ଣ କହିଲେ ଠାକୁର ?'

'ମୁଁ ଇନା ଯେଉଁ କଲେଜରେ ଅଛି ସେଇଠି ରହିବି କି ସରକାରୀ କଲେଜକୁ ଯିବି – ଏଇଆ ପଚାରିଲି । ଠାକୁରଙ୍କ ହୁକୁମ ହେଲା ଏଇଠି ରହିବା ପାଇଁ ।'

"ବାହାଘର କଥା ପଚାରିଲୁନି ?'

'କ'ଣ ପଚାରି ଥାଆନ୍ତି ?'

'କେବେ ହେବ ବୋଲି ପଚାରିଥାଆନ୍ତୁ ।'

'ସେକଥା ଆଉ ପଚାରିବି କ'ଣ ? ମୁଁ ଯେତେବେଳେ ବାହାହେବି ସେତିକି ବେଳେ ମୋ ବାହାଘର ହେବ । ସେଥିରେ ଆଉ ପଚାରିବାର କ'ଣ ଅଛି ?'

'ତା ହେଲେ ଯେତେ ଶୀଘ୍ର ସମ୍ଭବ ସେ କାମଟା ସାରିଦେ । ଆମ ଆଖି ବନ୍ଦ ହେବା ପୂର୍ବରୁ ଅନ୍ତତଃ ସେ କାମଟା ହୋଇଗଲେ ଭଲ ।'

'ହଉ ଦେଖିବା ।'

'ଏଇଠି ବାହାହେବୁ ନାଁ ମୁମ୍ବାଇରେ ?'

'ଏଇଠି ଦେଖିବା ।'

'ମନୁକୁ ପଚାରିଲୁନି ?'

'କାହାକୁ – ?' ହଠାତ୍ ମୁଁ ଚମକି ପଡ଼ିଲି ।

'ମନୁ ରେଗେକୁ ? ତା'ର ପରା ଗୋଟିଏ ଭଉଣୀ ବାହା ହେବାପାଇଁ ଅଛି ।'

ଓଃ ! ମଣିଷ ବର୍ତ୍ତିଗଲା । ମୁଁ ଭାବିଲି ମାଇଁ କହିଲେ ମାନୁ ।

'ଧେତ୍, ତାକୁ କ'ଣ ପଚାରିବି ମ ! ତୁମେ କେମିତି ଜାଣିଲ ତାର ଗୋଟିଏ ଭଉଣୀ ଅଛି ବୋଲି ?'

'ଆରେ, ମୁଁ ପରା ଏ ଗାଁରେ ରହୁଛି । ଭିତରକୁ ନ ଗଲେ ବି ସବୁକଥା

ଜାଣେ । ଭଲ ଭାବେ ଦେଖି ଚାହିଁ ବାହାହେବୁରେ ପୁଅ ! ଆମ ଭଳିଆ କରିବୁନି ।'

'ମାନେ ?'

ମାଇଁ କିଛି ଉତ୍ତର ନଦେଇ ଚୁପ୍ ରହିଲେ ।

'ଆମ ଭଳିଆ କରିବୁନି -' ସେ ଖୁବ ଉଦାସୀଆ ସ୍ୱରରେ କହିଥିଲେ । ସଂକେତରେ ସେ କିଛି କହିବାପାଇଁ ଚେଷ୍ଟା କରିଥିଲେ ବୋଧେ । କିନ୍ତୁ ମୁଁ କିଛି ବୁଝି ପାରିଲିନି ।

'ଏମିତି କାହିଁକି କହୁଛ ?' ମୁଁ ପୁଣିଥରେ ପଚାରିଲି । ସେ କିନ୍ତୁ କିଛି ଉତ୍ତର ଦେଲେ ନାହିଁ ।

'ଆମେ ତ ଭଲ ଭାବି କରିବା । ତାପରେ କିନ୍ତୁ ନିଜ ଭାଗ୍ୟ ।' ମୁଁ କହିଲି ପୁରୁଖା ମଣିଷଙ୍କ ପରି କିଛି ଉଦ୍ଦେଶ୍ୟ ନଥାଇ ।

'ଠିକ କଥା କହିଛୁରେ ପୁଅ । ଶେଷରେ ଭାଗ୍ୟ ହିଁ ସବୁକିଛି !'

ମାଇଁ ଗୋଟାଏ ଦୀର୍ଘ ନିଶ୍ୱାସ ନେଲେ । କିଛି ବେଳଯାଏ ଚୁପ ହୋଇ ରହିଲେ । ମୁଁ ବି ଚୁପ ରହିଲି । କିନ୍ତୁ ଏମିତି ଚୁପ ରହିବାକୁ ମୋତେ ଅସହ୍ୟ ଲାଗୁଥିଲା । ସେ ଉଦାସୀ ଅନ୍ଧାର ଭିତରେ ଚୁପଚାପ ରହିବା ବି ଗୋଟିଏ ଦଣ୍ଡ ଭଳି ଲାଗୁଥିଲା ।

ଭାବିଲି ଯାଉଛି ଗୋଟାଏ ମଜା କରିବି । ଅନ୍ତତଃ ମାଇଁଙ୍କର କ'ଣ ପ୍ରତିକ୍ରିୟା ହେଉଛି ତା' ତ ଜାଣିହେବ । ତେଣୁ ହସି ହସି କହିଲି, 'ମାଇଁ, ଦେବଦାସୀର ଝିଅ ଗୋଟିଏ ବାହାହେଲେ କେମିତି ହେବ ?'

'ବାହା ହଉନୁ ? ତୁମେ ସବୁ ତ ଆଜିକାଲିକା ପିଲା । ମନ ଯାହାହେବ କରିପାରିବ । ଏକଥା କିନ୍ତୁ ଖାଣ୍ଟି ସତ !'

'କିନ୍ତୁ ସେଥିରେ କ'ଣ ଖରାପ ଅଛି ? ନିଜ ଜାତିରେ ମନକୁ ନ ପାଉଥିବା ଝିଅକୁ ବାହାହେବା ଅପେକ୍ଷା ଦେବଦାସୀର ରୂପର ଗୁଣର ଝିଅକୁ ବାହାହେଲେ କ୍ଷତି କ'ଣ ?'

'ମାନୁ ଦୃଷ୍ଟିରେ ପଡ଼ି ଯାଇଛି କି ?'

ମାଇଁଙ୍କର ଏ ଆକସ୍ମିକ ପ୍ରଶ୍ନରେ ମୁଁ ଗୋଟାପଣେ ଘାବରେଇ ଗଲି । କିନ୍ତୁ ଉପରକୁ ମୋର ସେ ଅସ୍ଥିରତା ଆଦୌ ନ ଦେଖେଇ କହିଲି, 'କୋଉ ମାନୁ ?'

'ନିଜକୁ ନିଜେ ବେଶୀ ଚାଲାକ ବୋଲି ଭାବନା ଆଉ !'

'ନାଇଁ ମ ମାଇଁ, ସତରେ ମୁଁ ଜାଣିନି କିଏ ସେ ମାନୁ ।'

'କଲ୍ୟାଣୀର ଝିଅ ।'

'ଧେତ୍, ମୁଁ ଆଦୌ ତାକୁ ଦେଖିନି ।'

ମାଇଁ ତା'ପରେ ଆଉ କିଛି କହିଲେନି । ଚୁପଚାପ ବସିଲେ । ନାଁକୁ ଲଣ୍ଠନ ଜଳୁଥିଲେ ବି ଚାରିଆଡ଼ ଅନ୍ଧାର ଦେଖା ଯାଉଥିଲା । ତେଣୁ ମାଇଁଙ୍କ ମୁହଁର ଭାବ ଜାଣି ପାରିବା ଭଳି ନଥିଲା । ସେ ସେମିତି ଅନ୍ଧାରକୁ ଚାହିଁ ଚୁପହୋଇ ବସିଥିଲେ ।

'କିନ୍ତୁ ସେଥିରେ କ'ଣ ଅଛି ?' ମୁଁ ଖୋଳିତାଡ଼ି କଥା ବାହାର କରିବାକୁ ଚେଷ୍ଟାକଲି ।

'ନାଁ.... କିଛି ଖରାପ ନାହିଁ । ଘରେ ରଖିବା ଅପେକ୍ଷା ପ୍ରଥମରୁ ବାହା ହୋଇଯିବା ଭଲ ।'

ତାଙ୍କର ଏ କଥା ପଦକରେ ସତେ ଯେମିତି ଦୁଃଖ କିଛି ଠୁଳ ହୋଇ ରହିଥିଲା । କହିଦେଇ ସେ ଆଉ ମୋ କଥାକୁ ଅପେକ୍ଷା ନକରି ଭିତରକୁ ଚାଲିଗଲେ ।

*

ରାତିରେ ବିଛଣାରେ ପଡ଼ିବା ପର୍ଯ୍ୟନ୍ତ ମୁଁ ମନେ ମନେ ଡ଼ରି ଯାଇଥିଲି । କଥାରେ କଥାରେ ଯଦି କଲ୍ୟାଣୀ ମାମୁଁଙ୍କ ସହ ଗପସପ କଲାବେଳେ ମୁଁ ସେଠିକୁ ଯିବାକଥା କହିଦେବ ତାହେଲେ ଅଯଥାରେ ଘରେ ଗୋଟିଏ କନ୍ଦଳ ସୃଷ୍ଟି ହେବ । ଭାରି ଭୟ ହେଉଥିଲା । କିନ୍ତୁ ସେମିତି କିଛି ହେଲାନାହିଁ । କଲ୍ୟାଣୀ ମାମୁଁଙ୍କୁ କିଛି କହି ନଥିବ । ନାଁ, ସେ କହିବନି କିନ୍ତୁ କହିଲେ ବି କ'ଣ ଜଣା ପଡ଼ିବ ? ମାମୁଁଙ୍କ ଚେହେରା ତ ପଥର ମୂର୍ତ୍ତି । ସେଠି କୌଣସି ପ୍ରକାର ଭାବ ଦେଖାଯାଏ ନାହିଁ । କଲ୍ୟାଣୀ କହୁଥିଲା ମାମୁଁ ବେଶ ମେଳାପୀ । ଖୁବ୍ କଥା କହନ୍ତି । ତା' କଥାରେ ବିଶ୍ୱାସ ହେଉ ନଥିଲା । କିଏ ଜାଣେ ? ହୁଏତ କଲ୍ୟାଣୀ ସହିତ ମାମୁଁ ମନଖୋଲି ଗପୁଥିବେ, ହସୁଥିବେ ବି । କାହା ବିଷୟରେ କିଛି ନିର୍ଦ୍ଦିଷ୍ଟ ନିୟମ ଅଛି ବୋଲି ତ କହି ହେବନି । କାହାର କାହା ପାଖରେ ମନଖୋଲି କଥା କହିବାକୁ ଇଚ୍ଛା ହୁଏ, ସେ କଥା ଅନ୍ୟଜଣେ କେମିତି ଜାଣିବ ? କଲ୍ୟାଣୀର ଘର ବି ଗୋଟାଏ ଅଦ୍ଭୁତ ପ୍ରକାରର । ସେଠି ମନଟା ଖୁସି ନ ହେବା ହିଁ ଆଶ୍ଚର୍ଯ୍ୟଜନକ ଲାଗିବ ! ସେ ଘରେ ପଥର ଖୁଣ୍ଟ ବି କଥା କହେ । ଗଛ ପତ୍ରରୁ ବି ମହକ ଘୁରି ବୁଲୁଥାଏ !

ମୁଁ ଖାଲି ବିଛଣାରେ ଚିତ ହୋଇ ପଡ଼ିଥିଲି ଯାହା । ଆଖିରେ ପତା

ପଡୁନଥିଲା । ଆଖି ଖୋଲା ଥିଲା, ତା' ସହ ମନ ବି । କେମିତି ଗୋଟାଏ ଉନ୍ମାଦନାରେ ସାରା ଦେହଟା ଉଛନ୍ନ ହୋଇ ପଡୁଥିଲା । ରାତି ପାହି ଗଲେ ବି ଆଜି ଆଉ ମୋ ଆଖିରେ ପଲକ ପଡ଼ିବନି; ମୁଁ ଠିକ ଜାଣି ପାରୁଥିଲି । ମନ ହେଉଥିଲା, ମାନୁ କୋଳରେ ମୁଣ୍ଡ ରଖି ଶୋଇ ଯାଆନ୍ତି କି ! ମିଠା ମିଠା ଗୀତ ଗାଇ ସେ ମୋ ମୁଣ୍ଡର କେଶ ସାଉଁଳେଇ ଦେଉ ଦେଉ ମୋ ଆଖି ବୁଜି ହୋଇ ଯାଆନ୍ତା ତୃପ୍ତିରେ । ମାନୁ ବିନା ଏ ଜନ୍ମରେ ଆଉ ବୋଧେ ନିଦ ହେବ ନାହିଁ ।

କାନ୍ଥ ଘଣ୍ଟାରେ ଶବ୍ଦ ଶୁଭିଲା । ରାତି ଆସି ସାଢ଼େ ଏଗାର ହେଲାଣି । ମାମୁଁ ଶୋଇ ପଡ଼ିଥିଲେ । ତାଙ୍କ ଘୁଂଘୁଡ଼ି ଶୁଭୁଥିଲା । ମଝିରେ ଦାଣ୍ଡ କବାଟ ଖୋଲାହେଲା । ମାଇଁ ହାତରେ ଧରିଥିବା ଡ଼ିବିକୁ ଟେକି ଛକି ଛକି ଚାହିଁଲେ । ବେଞ୍ଚ ଉପରେ ଦେଖି ତାଙ୍କୁ ଆଶ୍ୱସ୍ତ ଲାଗିଥିବ ନିଶ୍ଚୟ । କବାଟ ବନ୍ଦ ହେଲା । ଭିତରର କାଠ କିଳିଣୀ ଦେବାର ଶବ୍ଦ ବି ଶୁଭିଲା । ତା'ପରେ ପୁଣି ସବୁ ଶାନ୍ତ ହୋଇଗଲା । ପୂରା ଶାନ୍ତ !

ଦୂରରେ ପାହାଡ଼ ଉପରେ କୁକୁର ବିଲୁଆ ବୋବେଇବାର ଶବ୍ଦ ଶୁଭୁଥିଲା । ଆହୁରି ଦୂରରୁ ସମୁଦ୍ର ଲହଡ଼ିର ଶବ୍ଦ ବି ଶୁଭୁଥିଲା । ଦିନର ହୋ ହଲ୍ଲା ଭିତରେ ସମୁଦ୍ରର ଅସ୍ତିତ୍ୱ ଜଣାପଡ଼େ ନାହିଁ । କିନ୍ତୁ ରାତିର ନୀରବତା ଭିତରେ ସେ ଶବ୍ଦ ବେଶ ସ୍ୱଷ୍ଟ ଶୁଣାଯାଏ । ମାନୁକୁ ସାଥୀରେ ଧରି ଏମିତି ଅଧରାତିରେ ସମୁଦ୍ର କୂଳକୁ ଗଲେ କେତେ ଭଲ ଲାଗନ୍ତା । ସମୁଦ୍ର କୂଳର ଶୁଭ୍ର ବାଲୁକାର ଶେଯ ଉପରେ ବସି ସମୁଦ୍ରର ଲହରୀ ଗଣନ୍ତୁ । ମାନୁ କୋଳରେ ମୁଣ୍ଡ ରଖି ଦୁନିଆ ଭୁଲିଯାଇ ମାନୁ ଗଳାର ସ୍ୱର ଶୁଣନ୍ତି । ସମୁଦ୍ରର ଲୁଣିହାଓ୍ୱା ଭୁଲି ମାନୁର ଉଷ୍ମ ନିଶ୍ୱାସର ମିଠା ବାସ୍ନାରେ ହଜିଯାଆନ୍ତି ।

ଆଖିରେ ନିଆଁ ଚମକିଗଲା । ଗୋଟାଏ ପ୍ରକାରର ତନ୍ଦ୍ରାରେ ମୁଁ ଉଠି ଛିଡ଼ାହେଲି । ରାତିର ଶୀତଳତା ବଢ଼ି ଚାଲିଥିଲା । କାଶ୍ମୀର ସାଲଟିକୁ ଦେହରେ ପକାଇ ଦେଇ ତକିଆ ତଳୁ ଟର୍ଚ୍ଚଟିକୁ ଆଣି ମୁଁ ଚଟକରି ବାହାରି ପଡ଼ିଲି । ଏକାମୁହାଁ ହୋଇ ଚାଲିବାରେ ଲାଗିଲି ।

ଧଡ଼ାର ଆଙ୍କୁଡ଼ି ଖୋଲି ମୁଁ ଅଗଣାରେ ପଶିଲି ।

ଲଣ୍ଠନ ଜଳୁଥିଲା ପିଣ୍ଡାରେ । ଲଣ୍ଠନ ସାମ୍ନାରେ ମାନୁ ଚିତ ହୋଇ ଶୋଇ ବହି ପଢୁଥିଲା ।

'ମାନୁ.... ।' ମୁଁ ଆସ୍ତେ କରି ଡାକିଲି ।

ସେ ଚମକି ପଡ଼ି ଉଠି ପଡ଼ିଲା ।

ଗୋଟିଏ ଶବ୍ଦ ସୁଦ୍ଧା ମୁହଁଖୋଲି କହିବାର ସ୍ଥିତି ମୋର ନଥିଲା ଆଉ । ମୁଁ ସିଧା ତାକୁ ମୋ ବାହୁବନ୍ଧନୀ ଭିତରକୁ ଆଣି ଛାତିରେ ଚାପି ଧରିଲି । ସେ ବି ଚୁପଚାପ ମୋ ଦେହରେ ଜଡ଼େଇ ହୋଇଗଲା ଲାଜକୁଳୀ ଲତାଟିଏ ପରି । ଦୁହିଁଙ୍କର ଆଖି, ଓଠ, ନିଶ୍ୱାସ, ପ୍ରଶ୍ୱାସ ସବୁ ଏକାକାର ହୋଇଗଲା । ଅଲଗା ହୋଇ ଆଉ କିଛି ରହିଲାନି । ସେଇ ଅବସ୍ଥାରେ କେତେ ସମୟ ବିତିଗଲା କିଛି ଜାଣି ହେଲାନି ।

ଅନେକ ସମୟ ପରେ ସେ ଚୁପଚୁପ କରି କହିଲା, 'ନିଦ ଆଦୌ ଆସୁ ନଥିଲା, ମୋତେ ଲାଗୁଥିଲା ତୁମେ ଆସିବ ।'

ପୁଣି ଆମେ ହଜିଗଲୁ ପରସ୍ପର ଭିତରେ ।

କେତେବେଳ ପରେ ମୁଁ ପଚାରିଲି, 'କଲ୍ୟାଣୀ ?'

'ମାଆ ଭିତରେ ଶୋଇଛି । ତୁମେ ଏବେ ଯାଅ । ନ ହେଲେ ତୁମ ମାମୁଁ ଜାଣି ପାରିବେ ।'

'ମାମୁଁ.... ?' ମୋର ହୋସ ଆସିଲା ।

'ଯାଅ ଶୀଘ୍ର ଏଥର ।'

'ହଁ ହଁ ମୁଁ ଯାଉଛି ।' ତା ମୁହଁରେ ମୁହଁ ଘସି ମୁଁ ବାହାରି ପଡ଼ିଲି ।

'କାଲି ଆସିବ ।'

ମୋ ଚପଲ କୁଆଡ଼େ ଗଲା ? ଟର୍ଚ୍ଚମାରି ଖୋଜିଲି ମୁଁ । କିନ୍ତୁ ପାଇଲିନି । 'ହଉ ଛାଡ଼, ଥାଉ ସେ ଚପଲ ।' ମନକୁ ମନ କହି ମୁଁ ଆକୁଡ଼ା ଡେଇଁ ରାସ୍ତାକୁ ଆସିଲି । ପଛକୁ ବୁଲି ଚାହିଁଲି । ମାନୁ ଫୁଙ୍କି ଦେଇ ଲଣ୍ଠନ ଲିଭାଉ ଥିଲା । ମୁଁ ଦୌଡ଼ିବାକୁ ଆରମ୍ଭ କଲି । ମୁଁ ଏମିତି ଆସିଲି କେମିତି ? ଯଦି ମାମୁଁଙ୍କର ଘା ଭିତରେ ନିଦ ଭାଙ୍ଗିଯାଇଥିବ ? ଯଦି ସେ ଜାଣି ପାରିଥିବେ ? ନିଜକୁ ନିଜେ କାବା ହୋଇ ପ୍ରଶ୍ନ କରୁଥିଲି । ଏସବୁ କଥା ମୁଁ କେମିତି ଆଗରୁ ଚିନ୍ତା କରି ପାରିଲିନି ? ରାସ୍ତାର ଖାଲ ଢ଼ିପ ନ ଦେଖି ମୁଁ ଅଣନିଶ୍ୱାସୀ ହୋଇ ଦୌଡ଼ୁଥିଲି ।

ଘରେ ପହଞ୍ଚି ଶାନ୍ତିରେ ନିଶ୍ୱାସ ମାରିଲି । ପାହାଚ ଉପରେ ଚଢ଼ିବା ମାତ୍ରେ ପାଦରେ ଚପଲ ବାଜିଲା । ଟର୍ଚ୍ଚମାରି ଦେଖିଲି । ମୋର ଚପଲ ସେଇଠି ଥିଲା । ମନକୁ ମନ ହସିଲି । କି ଅବସ୍ଥା ଆସି ପହଞ୍ଚିଲା ଜୀବନରେ । କ'ଣ ପୂରା ପାଗଳ ହୋଇଗଲା ପରି ଲାଗୁଛି ।

ସତରେ ପାଗଳ ହୋଇଯାଇଥିଲି ମୁଁ । କାରଣ ବିଛଣାରେ ଯାଇ ବସିଯିବା କ୍ଷଣି ଖିଆଲ ହେଲା ଯେ କାଶ୍ମିରୀ ଶାଲଟି ମୁଁ ମାନୁ ପାଖରେ ଛାଡ଼ି ଦେଇ ଆସିଛି ।

*

ପରଦିନ ସଂଧ୍ୟାବେଳେ ଟାଣି ହୋଇ ଗଲାଭଳି ମୁଁ ତାଙ୍କ ଘରକୁ ଗଲି । ପିଣ୍ଡାରେ କେହି ନଥିଲେ । ସିଧା ମାନୁ ଘର ଭିତରକୁ ପଶିଗଲି । ମାନୁ ଝରକା ପାଖରେ ବସି ଜୁଇ ଫୁଲର ଗଜରା କରୁଥିଲା ।

'ଆଜି କାହାକୁ ସବୁ ଗଜରା ଦେବ ?' ମୁଁ ବୋକାଙ୍କ ପରି ପଚାରିଲି ।

'ମାନେ ?'

ମୁଁ କ'ଣ ପଚାରିବାକୁ ଚାହୁଁଥିଲି ମୁଁ ନିଜେ ବି ବୁଝିପାରୁନଥିଲି । ମାନକୁ କ'ଣ ବୁଝେଇବି ?

'କାରଣ ସେ ଦିନ ମୋତେ ଗଜରା ମିଳିଥିଲା । ମୋ ପରେ ମାମୁଁଙ୍କୁ ବି ମିଳିଥିଲା । ଏକା ଭଳିଆ ।'

ମାନୁ ଏକ ଲୟରେ ମୋ ଆଡ଼କୁ ଚାହିଁଥିଲା । ତା'ର ସେ ଚାହାଣୀରେ ରାଗ ଥିଲା । ମୁହଁର ସେ ଭାବ ଅସଲି କି ନକଲି ସେ କଥା ଠାକୁର ଜାଣନ୍ତି ! କେତେବେଳଯାଏ ସେମିତି ଅନେଇ ରହିଲା । ତା'ପରେ କହିଲା -

'ସେଦିନ ତୁମକୁ କେହି କିଛି ଦେଇ ନଥିଲେ ।'

'ମାନେ ?' ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

'ମାଆ, ତୁମ ମାମୁଁଙ୍କୁ ଗଜରା ଦେଇଥିଲା ।'

'ମୋତେ ବି ତ -'

'ମାଆ... ?'

'ହଁ ।'

'ସେ ତୁମ ମାଇଁଙ୍କ ପାଇଁ ଦେଇଥିବ । କିନ୍ତୁ ତୁମକୁ କହିବା ପାଇଁ ଭୁଲି ଯାଇଥିବ ଯେ, 'ମାଇଁଙ୍କୁ ଏଇଟା ଦେଇଦେବୁ ।' ତୁମେ ତାକୁ ତୁମ ପାଖରେ ରଖିଦେଲ, ନୁହେଁ ? ମୁଣ୍ଡରେ ଲଗେଇ ନାହଁ ତ ?' କହି ମାନୁ ଖିଲି ଖିଲି ହୋଇ ହସି ଉଠିଲା ।

ମୁଁ ପଥର ଭଳି ଛିଡ଼ା ହୋଇଥିଲି ସେଠି ।

'ବସ, ବସ । ଆଜି ମୁଁ ତୁମକୁ ଗଜରା ଦେବି । ଆଜି ସେ ଅଧିକାର ମୋର !'

ମୁଁ ସେଇଠି ତଳେ ବସି ପଡ଼ିଲି । କଥା ବୁଲେଇବା ପାଇଁ କହିଲି,

'କ'ଣ ରାତିରେ ଶାଲଟା ମୋର ଲୁଚେଇ ରଖିଛ, ନୁହେଁ ?'

ମାନୁ ହସିଦେଲା । କହିଲା, 'ତୁମର ଶାଲ ତ ଅଛି, କିନ୍ତୁ ଚପଲ ଖୋଜି ଖୋଜି ପାଇଲିନି ।'

'ମୁଁ ଚପଲ ଘରେ ଛାଡ଼ି ଆସିଥିଲି । ଖାଲି ପାଦରେ ଚାଲି ଆସିଥିଲି । ମୋର ଆଦୌ ଧ୍ୟାନ ନଥିଲା । ନିଦରେ ଚାଲିବା ଭଳି ମୁଁ ଆସି ଏଠି ପହଞ୍ଚି ଯାଇଥିଲି ।'

ହୃଷ୍ଟରେ ଫୁଲ ଗୁନ୍ଥୁ ଗୁନ୍ଥୁ ହଠାତ ରହିଯାଇ କାବା ହେଲା ଭଳି ମୋତେ ଚାହିଁଲା । ତା ହାତକୁ ମୋ ଆଡ଼େ ବଢ଼େଇ ଦେଇ କହିଲା, 'ଧରି ଦେଖ ।'

ମୁଁ ତା' ହାତକୁ ଧରିବା ମାତ୍ରେ ତା ଦେହର ଶୀହରଣକୁ ମୋ ଦେହରେ ଅନୁଭବ କଲି ।

'ରାତି କଥା ମନେ ପଡ଼ିଲା କ୍ଷଣି ଏମିତି ଲାଗୁଛି ।'

'କିନ୍ତୁ ମୁଁ ବୁଝିପାରୁନି, ଅଧରାତିରେ ମୁଁ ଏ ଯାଏ ଆସିଲି କେମିତି ?'

'ମୋତେ କିନ୍ତୁ ଲାଗୁଥିଲା ତୁମେ ଆସିବ ବୋଲି । ତୁମେ ଯଦି ଆସି ନଥାନ୍ତ ସାରାରାତି ମୁଁ ସେମିତି ଉଜାଗର ରହିଥାଆନ୍ତି ।'

'ମୁଁ ଗଲାପରେ କ'ଣ କଲ ?'

'ତୁମ ଶାଲ ଘୋଡ଼େଇ ହୋଇ ଶୋଇପଡ଼ିଲି । ... ଚଳିବ ତ ?'

'ସେଇଟା ଏବେଠାରୁ ମୁଁ ତୁମକୁ ହିଁ ଦେଲି । କାଶ୍ମୀରରୁ ଆଣିଥିଲି । ମୋର ସ୍ମୃତିଚିହ୍ନ ବୋଲି ଭାବି ପାଖରେ ରଖ ।'

ମାନୁ ସାଙ୍ଗେ ସାଙ୍ଗେ ସାଲଟିର ଭାଙ୍ଗ ଖୋଲି ଆଉଥରେ ଭଲକରି ଭାଙ୍ଗିଦେଇ ତା ଉପରେ ଲଗେଇଲା । କୋଉଠୁ ସେ ଏତେ କଥା ଶିଖିଛି କେଜାଣି !

'କେତେଦିନ ଆଉ ରହିବ ବୋଲି ଠିକ କଲ ?'

'ଯାତ୍ରା ସରିଲେ ଯିବି ।'

ଜୁଇର ଗଜରାଟି ଆଣି ମୋ ହାତରେ ବାନ୍ଧି ଦେଇ କହିଲା, 'ସେତେବେଳକୁ ମୋ ତୋରଣ ବି ବୁଣା ସରିଯାଇଥିବ ।'

'ସେସବୁ ତୁମେ ତୁମ ପାଖରେ ରଖ ।'

'କାହିଁକି ?'

'ସବୁ ଜିନିଷ ମୁଁ ତୁମ ସହିତ ହିଁ ନେବି ।'

'ମତେ ନେବ - ? ସତ କହୁଛ.... ?'

'କାହିଁକି, କ'ଣ ବିଶ୍ୱାସ ହେଉନି ?'

'ନାଁ, ମୁଁ ବିଶ୍ୱାସ କରି ପାରୁନି, ସତରେ ।'

'ତୁମ ମାଆ ବିରୋଧ କରିବେ ନାଁ କ'ଣ ?'

' ସେ ତ ନିଶ୍ଚୟ କରିବ ।'

'କାହିଁକି ?'

'ମାଆ ସବୁବେଳେ କହେ, ଆମେ ହେଲୁ ଠାକୁରଙ୍କର ଦାସୀ । ଠାକୁରଙ୍କର ପାଦସେବା ଛାଡ଼ି ବିବାହ କଲେ ଆମର କେବେ ବି ମଙ୍ଗଳ ହେବନାହିଁ ।'

'ଏ ସବୁ ବେକାର କଥା । କେବଳ ଅନ୍ଧବିଶ୍ୱାସ ।'

'ସେ ଟିକେ ପୁରୁଣା କାଳିଆ ଲୋକ ତ ।'

'କିନ୍ତୁ ସେ ଯଦି ବିରୋଧ କରିବେ ଆମର କ'ଣ ହେବ ?'

'ତା' କଥା କିଏ ଶୁଣିବ ? ଚାରିଦିନ ପାଟି କରିବ, କନ୍ଦା କଟା କରିବ । ତା'ପରେ ପୁଣି ସବୁ ଆଗ ଭଳି ହୋଇଯିବ । ଆମେ ମାସକୁ ମାସ ତା ପାଖକୁ ଟଙ୍କା ପଠେଇଦେବା ତା' ଖର୍ଚ୍ଚ ପାଇଁ ।'

'ତା' ତ ନିଶ୍ଚୟ କରିବାକୁ ପଡ଼ିବ ।'

'କିନ୍ତୁ ତୁମ ଘର ପଟରୁ କେହି କିଛି କହିବେନି ତ ?'

'ଆମ ଘରେ ମୁଁ ସଂପୂର୍ଣ୍ଣ ସ୍ୱାଧୀନତା ପାଇଛି । ଏବେ ଯିବାକ୍ଷଣି ମୁମ୍ୱାଇରୁ ଅନ୍ୟ ଯାଗାକୁ ଯିବାପାଇଁ ଦରଖାସ୍ତ ଦେଇ ଦେବି । ସେ ନୂଆଯାଗାକୁ ବଦଳି ହୋଇ ଚାଲିଗଲେ ସେଠି କେବଳ ତୁମେ ଆଉ ମୁଁ, ଆମେ ଦୁଇଜଣ ହିଁ ରହିବା । ବିରୋଧ କିଏ କରିବ ? ସେଠି ମୁଁ ରାଜା ଆଉ ତୁମେ.....'

'ଦାସୀ ।' ମାନୁ ହସି ହସି କହିଲା ।

ମୁଁ ତା' ଥୋଡ଼ିରେ ଆଙ୍ଗୁଠି ରଖି କହିଲି, 'ସେଇଠିକି ଯାଇ ସାରିବା ପରେ ତୁମେ ତୁମ ତୋରଣ ସଜେଇବ ଦୁଆର ମୁହଁରେ ।'

'ଚଳିବ ।'

'ତୁମେ ତୁମ ମାଆଙ୍କୁ ଏ ବିଷୟରେ କହିଛ ?'

'ଅଳ୍ପ ଅଳ୍ପ, ଭଲ ଭାବରେ ନୁହଁ ।'

'ସେ କ'ଣ କହିଲେ ?'

'କହିଲା, ଆମର ବାହାଘର ଦରକାର ନାହିଁ ।'

'ମୁଁ ପଚାରିବି କି ?'

'ପଚାରୁନ - ?'

'ଯଦି ସେ ନାହିଁ କରନ୍ତି...... ?'

'......... ତା' ହେଲେ ତୁମେ ଯେଉଁ ମୁହୂର୍ତ୍ତରେ ମୋତେ ଯୁଆଡ଼େ ବି ଯିବାକୁ କହିବ ସେଇ ମୁହୂର୍ତ୍ତରେ ମୁଁ ଘରଛାଡ଼ି ତୁମ ସହ ଚାଲିଯିବା ପାଇଁ ପ୍ରସ୍ତୁତ ।'

ମୁଁ ଏକ ଲୟରେ ମାନୁର ଆଖିକୁ ଚାହିଁଲି । ମଫସଲ ଗାଁରେ ଜନ୍ମ ଏ ଝିଅର । କିନ୍ତୁ ପ୍ରଚଣ୍ଡ ତା'ର ଇଚ୍ଛାଶକ୍ତି । ତା ନିଷ୍ପତ୍ତିରେ ସେ ଅଟଳ । ମୁଁ ତା'ର ସେଇ ଦୃଢ଼ତାକୁ ଲକ୍ଷ୍ୟ କରୁଥିଲି ।

'ତୁମେ ଏମିତି ଚୁପ ହୋଇ ରହିଗଲ ଯେ ? ମୋ କଥାରେ ସନ୍ଦେହ ଆସୁଛି କି ? ଛାଇ ଭଳି ତୁମ ପାଦକୁ ଚାହିଁ ତୁମ ସାଥୀରେ ମୁଁ ଚାଲିବି ।'

ତଥାପି ମୁଁ କିଛି କହିଲି ନାହିଁ । ସେମିତି ଚାହିଁଥିଲି ତା ଆଖିର ଡ଼ୋଳାକୁ । ମୁହଁରେ କିଛି ଶବ୍ଦ ଆସୁନଥିଲା । ଅନ୍ତରର ଆନନ୍ଦକୁ ଚାପି ନ ଦେଇ ସେଇଠି ଆଖିବୁଜି ଗଡ଼ି ପଡ଼ିବା ଭଳି ଲାଗୁଥିଲା ।

'ମୋ ପ୍ରତି ସନ୍ଦେହ ଆସୁଛି ନାଁ ?'

'ନାଁ, ନାଁ ମୋଟେ ନୁହଁ । ବରଂ ତୁମ କଥା ଶୁଣି ମୋତେ ଏତେ ଖୁସି ଲାଗୁଛି ଯେ ମୁଁ କିଛି କଥା କହି ପାରୁନି ।'

ମୁଁ ତା' କୋଳରେ ମୁଣ୍ଡ ରଖିଲି । ସେ ଆସ୍ତେ ଆସ୍ତେ ମୋ ମଥାର କେଶ ଭିତରେ ଆଙ୍ଗୁଠି ଚଳେଇବା ଆରମ୍ଭ କରିଦେଲା । ମୁଁ ମୁହଁ ଖୋଲିବା ଆଗରୁ ସେ ମୋ ମନକଥା ଜାଣିପାରିଲା କେମିତି ?

ମୁଣ୍ଡର କେଶ ସାଉଁଳେଇବା ସହ ବେଳେବେଳେ ତା ମୁହଁକୁ ଆଣି ମୋ ମୁହଁରେ ଘଷି ଦେଉଥିଲା । ତା'ପରେ ଗୁଣୁଗୁଣୁ ହୋଇ ଗୀତ ଆରମ୍ଭ କରିଦେଲା -

ଛୋଟ ଛୁଆଙ୍କ ପରି ମୁଁ ସେମିତି ପଡ଼ିଥିଲି । ତା ମଥାରୁ ଜୁଇଫୁଲର ବାସ୍ନା ଚାରିଆଡ଼କୁ ଖେଳିଯାଉଥିଲା । ରହି ରହି ତା ନାକ ପୁଡ଼ା ଫୁଲିଯାଉଥିଲା । ଶୁଆନାକ ପରି ତୀକ୍ଷ୍ଣ ନାକ, ଗୋଲାପ ପାଖୁଡ଼ା ପରି ଗୋଲାପୀ ଓଠ, କାଳାଘୁମର ଆଖି, କପାଳରେ କୁଙ୍କୁମର ରେଖା - ତା ଗୀତ ସହ ଏ ସବୁକିଛି ଥରି ଯାଉଥିଲା । ସେଇଯାକୁ ଲକ୍ଷ୍ୟ କରି କରି ମୋ ଆଖି ବନ୍ଦ ହୋଇଗଲା । ମୁଁ ସେଇ ଅବସ୍ଥାରେ କେତେବେଳେ ଶୋଇପଡ଼ିଲି ନିଦରେ ମୋତେ ଆଦୌ ଜଣା ହେଲାନି । ସନ୍ଧ୍ୟାବେଳେ ଯାଇ ମୋ ନିଦ ଭାଙ୍ଗିଲା ।

ସତେ କି ବାହାହୋଇ ଚାରି ପାଞ୍ଚବର୍ଷ ହୋଇଗଲାଣି ! ଜୀବନ ଖୁବ ସୁଖରେ ଚାଲିଛି । ମନ ଆକଣ୍ଠ ତୃପ୍ତ - ମୋତେ ଏମିତି ଲାଗୁଥିଲା । ସେଇ ତୃପ୍ତିକୁ ସାଥୀରେ ନେଇ ମୁଁ ଉଠିଲି । ଘରକୁ ଆସିଲି ।

ଶ୍ୱାସରୁଦ୍ଧ ହୋଇ ପଡୁଥିବା ମାମୁଁଙ୍କର ସେଇ ବିରାଟ ଘରେ ମୁଁ ପାଦ ଦେଉ ଦେଉ ଭାବିଲି, ବେକାରରେ ଏତେ ଶୀଘ୍ର ନିଦ ଭାଙ୍ଗିଗଲା । ସେମିତି ଶୋଇ ରହିଥିଲେ କେତେ ବଢ଼ିଆ ହୋଇ ଥାଆନ୍ତା ! ତା' କୋଳରୁ ମୁଣ୍ଡ ଉଠେଇଲି କାହିଁକି ?

*

'ଗୋବିନ୍ଦ.... ଗୋବିନ୍ଦ... !'

ଲଖୋବାର ଏ ଜପରେ ମୋ ନିଦ ଭାଙ୍ଗିଲା । କମ୍ବଳ ଉଠେଇ ମୁଁ ଉଠି ଛିଡ଼ା ହୋଇଗଲି । ଚଉରା ସାମ୍ନାରେ ଦୁଇଟି ମାଟି ଥାଳିଆ ଫଟା ହୋଇଥିଲା । ଗୋଟିଏ ମାମୁଁ ଫଟେଇଥିବେ । ଆଉଟି... !

ମୁଁ ସେଇଠି ଛିଡ଼ା ହୋଇ ଗୋଡ଼ ହାତ ମୋଡ଼ି ଅଳସ ଭାଙ୍ଗିଲି । ମାମୁଁ ଠାକୁର ଘରୁ ବାହାରି ଆସିଲେ । ଆଜି ତାଙ୍କ ଠାକୁର ପୂଜା ଖୁବ ଶୀଘ୍ର ସରିଗଲାଣି । କାନ୍ଥ ଖୁଣ୍ଟିରୁ ଧୋତି ନେଇ ପିନ୍ଧିଲେ । ମୋ ଆଡ଼େ ଚାହିଁ କହିଲେ 'ଶୀଘ୍ର ଶୀଘ୍ର କାମ ସାର ତୋର ।'

ମୁଁ କୂଅମୂଳକୁ ମୁହାଁଇଲି । ଚଉରା ସାମ୍ନାରେ ମୁରୁଜ ପଡ଼ିଥିଲା । ଦୀପଟିଏ ଦିକି ଦିକି ହୋଇ ଜଳୁଥିଲା ଚଉରା ମୂଳରେ । କୂଅ ପାଖକୁ ଯାଇ ଦେଖେ ତ ଗୋଟିଏ ଥାଳିରେ ବଟା ହଳଦୀ ଥୁଆହୋଇଛି । ଗୋଟିଏ ଗିନାରେ ତେଲ ବି ଥୁଆ ହୋଇଛି । ପାଣି ହାଣ୍ଡିର ମୁହଁରେ ଦୁଇଟା ଗେଣ୍ଡୁ ଫୁଲ ବନ୍ଧାହୋଇ ରହିଛି । ଦୀପାବଳୀର ପୂର୍ଣ୍ଣ ପ୍ରସ୍ତୁତି । ପରିବେଶ ସେମିତି ଧୀର ମନ୍ଥର ଏବଂ ଶୀତଳ ଥିଲେ ବି ପର୍ବର ପ୍ରସ୍ତୁତିରେ କିଛି ମାତ୍ର କମି ନଥିଲା ।

ଦାନ୍ତ ଘଷି ସାରି ମୁଁ ଗାଧୋଇବା ପାଇଁ ବାହାରିଲି । ଦେହରୁ ଲୁଗା କାଢ଼ି ଗାମୁଛା ବଦଳିଲି । ନୋଟା ନେଇ ପାଣି ହାଣ୍ଡିରେ ବୁଡ଼େଇବା ପାଇଁ ଯାଉଛି, ଲଖୋବା ଦୌଡ଼ିଆସି କହିଲା, 'ହୋ ବାବୁ ଇଏ କ'ଣ ? ଆଜି ପରା ଦେବାଲୀ !'

ଏତିକି କହି ସେ ଦେହ ମୁଣ୍ଡ ସବୁଆଡ଼େ ତେଲ ଘଷିବା ଆରମ୍ଭ କରିଦେଲା । ହଳଦୀବଟାରୁ ଟିକେ ଟିକେ ଆଣି ସବୁଆଡ଼େ ଲଗେଇ ଦେଲା । ତା'ପରେ ଯାଇ ମୋ ଉପରେ ପାଣି ଢ଼ାଳିଲା ।

'ଲଖୋବା -!'

'କ'ଣ ?'

'ମାମୁଁଙ୍କୁ ତେଲ ହଳଦୀ କିଏ ଲଗେଇ ଦେଲା କିରେ ?'

'ସେ କାମ ମୋର । ଆଉ କିଏ କରିବ ?' ଲଖୋବା ଦାଢ଼ୀ ଆଉଁସୁ ଆଉଁସୁ କହିଲା ।

'ଆଜି ତ ପିନପିନ ହୋଇ ଖୁଅର ହୋଇଛୁ ରେ ?'

'ସେ କଥା ଆଉ କହିବାକୁ ଅଛି ! ଭଣ୍ଡାରୀ ଟୋକାକୁ ଡାକିଥିଲି ମୋତେ ତେଲହଳଦୀ ଲଗେଇଦେବ ବୋଲି । ଯେତେହେଲେ ଆଜି ଦେବାଳୀ ପରା ।'

ଗାଧୋଇ ସାରି ଘରେ ପଶିଲା ବେଳକୁ ମାମୁଁ ମୋତେ ଅପେକ୍ଷା କରି ରହିଥିଲେ ଅଧୈର୍ଯ୍ୟ ହୋଇ । କହିଲେ 'ଆଗ ତାକୁ ଭାଙ୍ଗ ।'

ଚଉରା ପାଖରେ ଥୁଆ ହୋଇଥିବା ମାଟି ଥାଳିଆଟିକୁ ମୁଁ ବୁଢ଼ା ଆଙ୍ଗୁଠି ଟିପ ଦେଇ ଭାଙ୍ଗିଦେଲି । ତା ତଳେ ଥିବା ଫଳଟି ବି ଚେପା ହୋଇଗଲା ।

'ଯାଆ, ଆଗ ଠାକୁରଙ୍କୁ ପ୍ରଣାମ କରି ଆ ।'

ମୁଁ ଠାକୁରଘରକୁ ଯାଇ ପ୍ରଣାମ କଲି । ତା' ପରେ ଆସି ମୋ ପାଇଁ ଥୁଆ ହୋଇଥିବା ମଠାଲୁଗାକୁ ପିନ୍ଧିଲି । ମନେମନେ ଭାବିଲି ବେକାରରେ ଏ ନୂଆ ଲୁଗା ପିନ୍ଧିଲି । ଏ ଯେଉଁ ନିରବ ପରିବେଶ - ଏଥିରେ ନୂଆ ଲୁଗା ପିନ୍ଧିବାର ଅର୍ଥ କିଛି ନାହିଁ । ସାରା ଘର ଭିତରେ ଲଖୋବାକୁ ଛାଡ଼ିଦେଲେ ଦୀପାବଳୀର ଖୁସି କାହା ମୁହଁରେ ବି ଦିଶୁନଥିଲା । ମୋ ମନଟା ବି ଉଦାସିଆ ହୋଇଗଲା । କିଛି ଯେମିତି ଭୁଲ କରିଦେଲା ଭଳି ମୋତେ ଲାଗୁଥିଲା ।

ସେଇଠି ପାଖରେ ଗୋଟିଏ ପ୍ୟାକେଟ ଥୁଆ ହୋଇଥିଲା । ମାମୁଁ ସେଇଟା ଆଣି ମୋ ହାତକୁ ଦେଇ ଦେଲେ । ମୁଁ କିଛି ବୁଝି ପାରିଲିନି । ବୋକାଙ୍କ ପରି ତାଙ୍କ ମୁହଁକୁ ଅନେଇଲି ।

'ନେଇ ଭିତରେ ଦେଇଦେ ।' ଆସ୍ତେ କରି କହିଲେ ।

ମୁଁ ପ୍ୟାକେଟଟି ନେଇ ଭିତରକୁ ଗଲି । ମାମୁଁ ବାହାରେ ଛିଡ଼ା ହୋଇଥିଲେ । ପ୍ୟାକେଟ ଖୋଲି ଦେଖିବାକୁ ଇଚ୍ଛା ହେଉଥିଲା । କିନ୍ତୁ ସାହସ ହେଲାନାହିଁ । ମାଇଁ ଖୋଲିଲେ ତ ବଳେ ଜଣାପଡ଼ିଯିବ ଭିତରେ କ'ଣ ଅଛି । କ'ଣ ଆଉ ଥିବ ? ନୂଆ ଶାଢ଼ୀ ଖଣ୍ଡେ ଥିବ ନିଶ୍ଚୟ ।

ରୋଷେଇ ଘରେ ପ୍ରତିଦିନ ପରି ଦୁଇଟି ପିଢ଼ା ପଡ଼ିଥିଲା । ଠାକୁରଘରେ କିନ୍ତୁ ରୂପା ଫୁଲ ଲାଗିଥିବା ପିଢ଼ାଟିଏ ପଡ଼ିଥିଲା । ସବୁଦିନିଆ ପୁରୁଣା ଶାଢ଼ୀ ପିନ୍ଧି ମାଇଁ ତାଙ୍କ କାମରେ ବ୍ୟସ୍ତ ଥିଲେ । ପିଢ଼ା ସାମ୍ନାରେ କଦଳୀ ପତ୍ର ପଡ଼ିଥିଲା । ମାଇଁ ସେଇ କଦଳୀ ପତ୍ର ଚାରିକଡ଼ରେ ମୁରୁଜ ପକଉଥିଲେ ।

ମୁରୁଜ ପକେଇସାରି ମାଇଁ ଉଠିଗଲେ । ମୁଁ ସେତିକିବେଳେ ତାଙ୍କ ହାତରେ ପ୍ୟାକେଟଟି ଧରେଇ ଦେଲି ।

'ମାଇଁ ..... ଏଇଟା ମାମୁଁ ଦେଲେ ।'

'ରଖିଦେ ସେଠି ।'

'ତୁମେ ନେଇ ଖୋଲି ଦେଖୁନ ?'

'ତତେ ପରା କହିଲି ସେଠି କୋଉଠି ରଖିଦେ ।'

ମାଇଁ ଚୁଲି ପାଖକୁ ଚାଲିଗଲେ । ମୁଁ ବି ପ୍ୟାକେଟଟିକୁ ସେଇଠି ଗୋଟିଏ ଡ଼ବା ଉପରେ ଥୋଇଦେଇ ବାହାରକୁ ଚାଲି ଆସିଲି ।

ଅଳ୍ପସମୟ ପରେ ଲଖୋବା ଆସି ଡାକିବାରୁ ମାମୁଁ ଓ ମୁଁ ଦୁହେଁଯାକ ଭିତରକୁ ଗଲୁ । ପିଢ଼ାରେ ବସିଲୁ । ପତ୍ରରେ ବିଭିନ୍ନ ପ୍ରକାରର ଖାଦ୍ୟ ବଢ଼ା ହୋଇ ରହିଥିଲା । ସବୁ ପ୍ରାୟ ଚୁଡ଼ାର ପ୍ରସ୍ତୁତି । ମିଠା, ଲୁଣି, ପୁଣି ଦହି ସହିତ । ତା ସାଙ୍ଗକୁ ନାଲିଚଣାର ଚଟଣୀ ମଧ ଥିଲା । ମାମୁଁ ପିଢ଼ାରେ ବସି ଖାଇବା ଆରମ୍ଭ କରିଦେଲେ । ତାଙ୍କର ନିତିଦିନିଆ ଅଭ୍ୟାସ ଅନୁସାରେ ମୁହଁ ତଳକୁ କରି ତରତର ହୋଇ ଖାଉଥିଲେ ।

ମାମୁଁ ଖାଇ ଚାଲିଥିଲେ । ଯାହା ସରି ଯାଉଥିଲା, ମାଇଁ ପୁଣି ବାଢ଼ିଦେଉଥିଲେ । ମାମୁଁ ଖାଇବା ଆଉ ମାଇଁଙ୍କର ବାଢ଼ିବାକୁ ଲକ୍ଷ୍ୟ କରି ମୁଁ ଭିତରେ ଅସ୍ୱସ୍ତି ଅନୁଭବ କରୁଥିଲି । ପାଣି ଢୋକେ ଢୋକେ ପିଇ ସେ ଚୁଡ଼ାକୁ ମୁଁ ଗିଳୁଥିଲି ଯାହା ।

ବାଢ଼ିବାପାଇଁ ମାଇଁ ନଇଁ ପଡୁଥିବା ବେଳେ ତାଙ୍କ ଗଳାରେ ଥିବା ସେଇ ଏକମାତ୍ର ମଙ୍ଗଳସୂତ୍ରଟି ବାହାରକୁ ଝୁଲି ପଡୁଥିଲା ।

ମାମୁଁ ଦେଇଥିବା ପ୍ୟାକେଟଟି କଡ଼ରେ ସେମିତି ଥୁଆହୋଇଥିଲା ।

ମାମୁଁ ଉଠିଗଲା ପରେ ମାଇଁ ମୋତେ ପଚାରିଲେ, 'ଆଉ କ'ଣ ଦେବି ତୋତେ କହ ।'

'ନାଁ, ନାଁ ମୋର ଆଉ କିଛି ଦରକାର ନାହିଁ ।' ମୁଁ କହିଲି । ମାଇଁ ତା'ପରେ ଲଖୋବା ପାଇଁ ବାଢ଼ିଲେ ।

ମୁଁ ହାତଧୋଇ ଆଟୁଘର ଭିତରକୁ ଆସିଲି । ମାମୁଁ ସେଠି ବସି ତାଙ୍କ ଟ୍ରଙ୍କ ଖୋଲି କ'ଣ ଦେଖୁଥିଲେ । କଣେଇ କଣେଇ ମୋ ଆଡ଼କୁ ଅନଉଥିଲେ । ମୁଁ ତାଙ୍କ ହାବଭାବ ଲକ୍ଷ୍ୟ କରି ପିଣ୍ଡାକୁ ଚାଲି ଆସିଲି । ସେଇଠି ଏପଟ ସେପଟ ହେଲି । ମାମୁଁଙ୍କ ପ୍ରତି କିନ୍ତୁ ମୋର ଲକ୍ଷ୍ୟ ଥିଲା ।

ମାମୁଁ ଟ୍ରଙ୍କରୁ ଭାଙ୍ଗପକା ଚଉଡ଼ା ବର୍ଡ଼ରର ଧୋତି ବାହାର କରି ପିନ୍ଧିଲେ । ତା' ଉପରେ ସିଲ୍‌କ ପଞ୍ଜାବୀ ପିନ୍ଧିଲେ । ତା ଉପରେ ଧଳା ରଙ୍ଗର ସାର୍ଟିନ୍ କନାର କୋଟ ପିନ୍ଧିଲେ । କୋଟରେ ସାତୋଟି ସୁନା ବୋତାମ ଲାଗିଥିଲା । ଗୋଟିଏ ବୋତାମରୁ ଚେନରେ ଘଡ଼ି ଲାଗି ଆସି ପକେଟରେ ପଶିଥିଲା । ସୁନେଲି ବର୍ଡ଼ର ଥିବା ସିଲ୍‌କ ପଗଡ଼ିଟିଏ ମୁଣ୍ଡରେ ବାନ୍ଧିଲେ । ମନକୁ ମନ ହସୁଥିଲେ । ବେଶ ପୋଷାକରୁ ତାଙ୍କ ମନଟା ଖୁବ ଖୁସି ଜଣା ପଡୁଥିଲା । କାନରେ ଅତର ଭିଜା ତୁଳା ଗେଞ୍ଜିଥିଲେ । ସେଥିରେ ହାତମାରି ଆଣି ନାକରେ ଲଗାଇଲେ । କୋଟର ହାତ ଭିତରୁ ବାହାରକୁ ଦିଶୁଥିବା ସାର୍ଟର ହାତରେ ସୁଦ୍ଧା ସୁନା ବୋତାମ ଟକଟକ କରୁଥିଲା । ମାମୁଁ ଆଜି ପୁରାପୁରି ଅଲଗା ଦିଶୁଥିଲେ । ଖୁବ ସୁନ୍ଦର ଯୋତା ମଚ ମଚ କରି ମାମୁଁ ବାହାରକୁ ଆସିଲେ ।

'ମାମୁଁ ମନ୍ଦିର ଆଡ଼େ ବାହାରିଲ କି ?' ପଚାରିଦେଲି ।

'ହଁ ।'

ଗୋଟାଏ ହୁଙ୍କାର ମାରି ମୋ ସାମ୍ନା ଦେଇ ବାହାରକୁ ବାହାରିଗଲେ । ହେନାଫୁଲର ମହ ମହ ବାସ୍ନା ନାକ ଆଗରେ ଚହଟିଗଲା । ଅତରର ହୋଇଥିବ ନିଶ୍ଚୟ ।

ମୁଁ ଅସ୍ଥିର ଭାବେ ଦାଣ୍ଡ ପିଣ୍ଡାର ଏ ପଟରୁ ସେପଟ, ସେପଟରୁ ଏପଟ ହେଉଥିଲି । ଗୋଟିଏ ବାହାର ଲୋକ ପରି । ନିହାତି ପରମଣିଷଟିଏ ପରି ।

ଯା'ହେଉ ସେତିକି ବେଳେ ଲଖୋବା ଆସି ପହଞ୍ଚିଗଲା ।

ଧୋବଫରଫର ସଫା ଲୁଗା ଗୋଟିଏ ପିନ୍ଧିଥିଲା । ତା ଉପରେ ସଫା ସାର୍ଟ ଗୋଟିଏ । ସାର୍ଟ ଉପରେ ହଳଦିଆ କୋଟ । ସାର୍ଟ କିମ୍ବା କୋଟ କେଉଁଥିରେ ବି ବୋତାମ ନଥିଲା । ମୁଣ୍ଡରେ ସିଲ୍‌କ ପଗଡ଼ି । ମାମୁଁଙ୍କର ପୁରୁଣା ପଗଡ଼ି ବୋଧେ । କାନ୍ଧରେ ନାଲି ଧଡ଼ି ଥିବା ଗାମୁଛାଟିଏ । ଗାମୁଛା କାନିରେ କ'ଣ ଗୋଟେ ପୁଡ଼ିଆ ବନ୍ଧା ହୋଇଥିଲା ।

'କ'ଣ ବାନ୍ଧିଛୁ କିରେ ଗାମୁଛାରେ ?'

'ଏଇ ଚୁଡ଼ା ଦି'ଟା ।'

ପୁଣି ସେଇ ତା'ର ଦାଢ଼ୀରେ ହାତମାରି ସେଠି ସେମିତି ଛିଡ଼ା ହୋଇ ରହିଲା ।

'କ'ଣ କିଛି କହିବୁ କିରେ ?'

'ନାଇଁ..... ଯେ..... ଗୋଟାଏ କାମ ଥିଲା ।'

'କି କାମ କହୁନୁ ?'

'ଦି'ଟା ଟଙ୍କା ଦରକାର ।'

'କ'ଣ କରିବୁ କହୁନୁ ?'

ଲଖୋବା ଲାଜ ଲାଜ ହୋଇ ହସିଦେଲା । ମୁଁ ତା' ହାତରେ ଟଙ୍କା ଧରେଇ ଦେବା ମାତ୍ରେ ସେଠୁ ତରତର ହୋଇ ଚାଲିଗଲା । ତା ଠିକଣା ଯାଗାକୁ ଗଲା ନିଶ୍ଚୟ । ଖାଇସାରି ଶୋଇଲି । ଉଠିବା ପରେ କିନ୍ତୁ ଆଉ ଘରେ ରହିବା ମୋ ପକ୍ଷରେ ସମ୍ଭବ ନଥିଲା । ମନ ଉଚ୍ଛନ୍ନ ହେଉଥିଲା । ବ୍ୟାଗଟିଏ ଧରି ବଜାର ଆଡ଼େ ଗଲି । ଦୀପ, ସଳିତା ସବୁ ନେଇ ଆସିଲି । ସାରଙ୍ଗା ପାଖରୁ ଗୋଟିଏ ଆକାଶ ଦୀପ ବି ଆଣିଥିଲି । ଘର ସାମ୍ନାରେ ବାଉଁଶ ବାନ୍ଧି ସେଥିରେ ଆକାଶଦୀପ ଜଳିବାର ବ୍ୟବସ୍ଥା କଲି । ସଂଧ୍ୟା ହେବା ବେଳକୁ ଘରର ଚାରିପଟେ ଦୀପ ଜଳେଇ ରଖିଦେଲି ।

ତା'ପରେ ଚାଲିଲି ମନ୍ଦିରକୁ ।

ବାଟରେ ତାଙ୍କ ବାଉଁଶ ଧଡ଼ା ପାଖରେ ମାନୁ ଠିଆ ହୋଇଥିଲା । ମନ୍ଦାର ଫୁଲ ହୋଇଥିବା ଜରି ଧଡ଼ି ସିଲ୍କ ଶାଢ଼ୀ ପିନ୍ଧି ସଜବାଜ ହୋଇ ଛିଡ଼ା ହୋଇଥିଲା । ସେଇ ରଙ୍ଗର ଜରି ଧଡ଼ି ଥିବା ବ୍ଲାଉଜ । ସହଜେ ତା'ର ଚମ୍ପାଫୁଲ ପରି ରଙ୍ଗ । ସେଥିରେ ନାଲି ଶାଢ଼ୀରେ ସେ ଚମକୁଥିଲା । ଦେହରେ ବ୍ଲାଉଜ ଏମିତି ଫିଟ ହୋଇଥିଲା ଯେ ଦେହରେ ତା'ର ଦାଗ ବି ପଡ଼ିଯାଇଥିଲା । ମୋତେ ଦେଖୁ ଦେଖୁ କହିଲା, 'ତୁମକୁ ଇ ଅପେକ୍ଷା କରି ରହିଥିଲି ।'

ତା' ମୁହଁର ଚମକ ଆଉ ଗଳାର ସ୍ୱରରୁ ତା ମନର ଖୁସି ସ୍ପଷ୍ଟ ଦିଶୁଥିଲା ।

ମୁଁ ଅଗଣା ଭିତରକୁ ଗଲି । ସେ ଘର ଭିତର ଆଡ଼କୁ ମୁହାଁଇଲା । ମୁଁ ବି ତା' ପଛେ ପଛେ ଚାଲିଲି ।

ଘରର ଚାରିପଟେ ଦୀପ ସଜାହୋଇ ରହିଥିଲା । ସବୁ ଦୀପ ମିଶିଲେ ପ୍ରାୟ ପଚାଶ ଷାଠିଏ ପାଖାପାଖି ହେବ । ପିଣ୍ଡାରେ, ପାହାଚରେ, ଅଗଣାରେ, ଚଉରା

ଉପରେ, ତୁଳସୀ ମୂଳେ ପାଖରେ ସୁନ୍ଦା ଦୀପ ଜଳୁଥିଲା । ଏମିତିକି ତୁଳସୀଗଛର ଛନ୍ଦାଛନ୍ଦି ଡାଳ ଉପରେ ବି ଦୀପ ଜଳୁଥିଲା । ତୁଳସୀ ଚଉରା ପାଖରେ ମୁରୁଜ ପଡ଼ିଥିଲା । ଟିକେ ଦୂରକୁ ଗୋଟିଏ ସାଧାସିଧା ଆକାଶଦୀପ ବି ଜଳୁଥିଲା । ଘରର ମୁଖ୍ୟ ଦ୍ୱାରରେ ତୋରଣ । ପିଣ୍ଡାରେ ବିଭିନ୍ନ ରଙ୍ଗରେ ମୁରୁଜରେ ଫୁଲ କଟା ହୋଇଥିଲା ।

ସବୁ ଆଡ଼କୁ ଦୃଷ୍ଟି ପଡ଼ିବାକ୍ଷଣି ମନଟା ଖୁସି ହୋଇଗଲା ।

'ଏତେ ଡେ଼ରିରେ ଆସିଲୁ ଆଜି ?' କଲ୍ୟାଣୀର ଆଖି ମୋ ଉପରେ ପଡ଼ିଯିବା କ୍ଷଣି ପଚାରିଲା ।

'ଘରେ ଦୀପ ଜାଳି ସଜେଇ ଦେଇ ଆସିଲି ତ !'

'ମାଇଁ ଭଲ ଅଛି ନାଁ ?'

'ହଁ !'

'ହଉ ଯାଆ, ଘର ଭିତରକୁ ଯାଇ ବସ !'

ମୁଁ ଭିତରକୁ ଗଲି ।

ଘର ଭିତରେ ରୂପାର ଟିକିଲି ଲଗା ହୋଇଥିବା ପିଢ଼ା ପଡ଼ିଥିଲା । ପିଢ଼ା ଚାରିପାଖରେ ବିଭିନ୍ନ ରଙ୍ଗରେ ମୁରୁଜ ପଡ଼ି ଫୁଲ କଢ଼ା ହୋଇଥିଲା ସବୁ । ତା' ଉପରେ ପୁଣି ସୁନେଲି ରଙ୍ଗଗୁଣ୍ଡ ଛିଞ୍ଚା ହୋଇଥିଲା । ପିଢ଼ା ଆଗରେ ଦୁଇଟି ଦୀପ ଜଳୁଥିଲା ।

'ବସ ସେ ପିଢ଼ା ଉପରେ !' ମାନୁ ମୋତେ ଲକ୍ଷ୍ୟ କରି କହିଲା ।

ମୁଁ ଘରର ସାଜସଜ୍ଜା ଦେଖି ମନେ ମନେ ବହୁତ ଖୁସି ହେଉଥିଲି । କିଏ ଯେମିତି ମନ୍ତ୍ର କଲା ପରି ମୁଁ ସିଧା ଯାଇ ପିଢ଼ା ଉପରେ ବସି ପଡ଼ିଲି ।

ଗୋଟିଏ ରୂପାଥାଳିରେ ଖାଇବା ଜିନିଷ ସବୁ ରଖି କଲ୍ୟାଣୀ ମାନୁ ହାତରେ ମୋ ପାଖକୁ ପଠେଇ ଦେଲା । ମାନୁ ଥାଳିଟିକୁ ମୋ ସାମ୍ନାରେ ରଖିଲା । ଥାଳି ରଖିବା ପାଇଁ ନଇଁ ପଡ଼ିବା ବେଳେ ତା ବେଣୀରେ ଲଗେଇଥିବା ଗଜରାର ମହକ ଆସି ମୋ ନାକକୁ ଛୁଇଁଗଲା । ସେ ମହକରେ ମୋ ଦେହରେ ଏକ ଅପୂର୍ବ ଶିହରଣ ଖେଳିଗଲା । ମୁଁ ଇତଃସ୍ତତ ହୋଇପଡ଼ିଲି । ସେଇ ଅବସ୍ଥାରେ ଥାଳିରୁ ମିଠେଇ ଗୋଟିଏ ଉଠେଇ ଆଣିଲି । ମାନୁ ଛିଡ଼ା ହୋଇ ହସୁଥିଲା ।

'କିଲୋ, ଛିଡ଼ା ହୋଇ କ'ଣ ଦେଖୁଛୁ ? ବଳେଇ ବଳେଇ ଖୋଇ ଦେଉନୁ ?' କଲ୍ୟାଣୀ ହସିଦେଇ କହିଲା, 'ଆଗ ବନ୍ଦାପନା କର !'

ମୁଁ ଉଠେଇଥିବା ଲଡ୍ଡୁଟି ପୁଣି ଥାଳିରେ ରଖିଦେଲି । ମାନୁ ବନ୍ଦାପନା ଥାଳିଟି ହାତରେ ଧରି ଆସିଲା । ଥାଳିରେ ଜଳୁଥିବା ଦୀପର ଆଲୁଅରେ ତା' ମୁହଁ ଅପୂର୍ବ ସୁନ୍ଦର ଦିଶୁଥିଲା ।

'ଏ ହାର ଦେଖିଲୁରେ ବାବୁଲ !'

କଲ୍ୟାଣୀ ତା' ବେକରୁ ହାର ଗୋଟିଏ କାଢ଼ି ଦେଖେଇଲା ।

'ମାମୁଁ ଦେଇଛନ୍ତି ।' ସେ ନିର୍ବିକାରରେ କହିଲା ।

'କେବେ ?'

'ଆଜି ସକାଳେ । ଯାହା ହେଲେ ସିଏ ତ ଆମର ସାହା ଭରସା ।'

ମୁଁ ଚମକି ପଡ଼ିଲି । ମୋର ଏ ସବୁ ବିଷୟରେ ଆଦୌ ଧାରଣା ନଥିଲା । ମୁଁ ତ ଖାଲି ହାତରେ ଆସିଛି ।

'ତା'ମାନେ ସବୁବେଳେ ଯେ କିଛି ଦେବାକୁ ପଡ଼ିବ, ସେ କଥା ନୁହେଁ ।'

ଠିକ ବେଳରେ ଏତକ କହି ମାନୁ ମୋତେ ବଞ୍ଚେଇ ଦେଲା । ମୁଁ ତା'ର ତୀକ୍ଷ୍ଣ ବୁଦ୍ଧି ମନେ ମନେ ତାରିଫ କଲି ।

ମାନୁ ମୋ କପାଳରେ ସିନ୍ଦୁର ଲଗାଇଲା । ଅକ୍ଷତ ଲଗାଇଲା । ତା'ପରେ ବନ୍ଦାପନା କଲା । ମୋର ହଠାତ ମନେ ପଡ଼ିଗଲା । ମୋ ପଞ୍ଜାବୀ ପକେଟରୁ ସୁନା ବୋତାମ ବାହାର କଲି । ସୁନାର ଚେନ ସହିତ ଥିଲା ଚାରୋଟି ବୋତାମ । ସିଧା ନେଇ ଥାଳିରେ ରଖିଦେଲି ।

'ଓହୋ ! ପରେ ଦେଲେ କ'ଣ ଚଳିବନି ? ଏମିତି ସାଙ୍ଗେ ସାଙ୍ଗେ କିଛି ଦରକାର ନାହିଁ ।' ଏତିକି କହିଦେଇ ଆମ ଦୁଇଜଣଙ୍କୁ ସେଠି ଏକାନ୍ତରେ ଛାଡ଼ିଦେଇ କଲ୍ୟାଣୀ ବାହାରକୁ ଚାଲିଗଲା । ବାହାରେ କାହା ସହିତ ହସି ହସି ଗପିବାର ଶୁଭିଲା ।

ମୁଁ ମାନୁ ଆଡ଼େ ଚାହିଁଲି । ସେ ମୋ ପାଖରେ ବସିଥିଲା ମୋ ସାମ୍ନାରେ । ଆଣ୍ଠୁ ଯାକି ଦେଇ ମୁହଁ ଆଣ୍ଠୁ ଉପରେ ରଖି । ମଝିରେ ମଝିରେ ମୋତେ ଚାହୁଁଥିଲା । ମୁଁ ଥାଳିରେ ହାତ ସୁଦ୍ଧା ଦେଲି ନାହିଁ । ସେ ବୁଝିଗଲା ମୋ ମନକଥା । ଲଡ୍ଡୁ ଗୋଟିଏ ଆଣି ମୋତେ ଖୋଇଦେଲା । ମୁଁ ଲଡ୍ଡୁ ସହ ତା' ହାତର ଆଙ୍ଗୁଠିକୁ ବି ପାଟି ଭିତରେ ଚାପି ଦେଇଥିଲି ଅଜାଣତରେ । ସେ ପାଟି କରି ଉଠିଲା । ମୁଁ ଚମକି ପଡ଼ିଲି । ସେ ହାତ ଟାଣି ନେଲା । ଲାଜରେ ତଳକୁ ମୁହଁ କରି କିଛି ସମୟ ପରେ କହିଲା, 'ଖାଅ ନା !'

'ମୋର ତ ଖାଇବାପାଇଁ ଆଦୌ ଇଚ୍ଛା ନାହିଁ ।'

'କାହିଁକି ?'

'ମୋତେ ଏ ଗରିଷ୍ଠ ଭୋଜନ ସବୁ ଭଲ ଲାଗେନି ।'

'ତା'ହେଲେ କ'ଣ ଭଲ ଲାଗେ ।'

'ମିଠା ମିଠା କିଛି ।'

ସେ ହସିଦେଲା । ତା ହସ ଥିଲା ଭାରି ମିଠା । ତା'ପରେ ସେ ଉଠିଯାଇ ଘରର କବାଟ ବନ୍ଦ କରିଦେଲା ।

ବାହାରେ କଲ୍ୟାଣୀ ଗପୁଥିଲା । ସୋମାଜୀ ମାଷ୍ଟର ପୋଷ୍ଟଅଫିସର ସିଲ ବାଡ଼େଇବା ପରି ଶବ୍ଦ କରି ହସୁଥିଲା । ସୀତିଆ ମୃଦଙ୍ଗୀ ନାଚର ତାଳ ଦେଲା ପରି ମୃଦଙ୍ଗ ବଜଉଥିଲା ।

*

ସେଦିନ ତାଙ୍କ ଘରେ ପହଞ୍ଚିବା ବେଳକୁ କଲ୍ୟାଣୀ ଏକା ଥିଲା ଘରେ । ଆଉ ଦୁଇଦିନ ପରେ ଯାତ୍ରା । ଯାତ୍ରାର ପ୍ରସ୍ତୁତି କାମପାଇଁ ମାନୁ ମନ୍ଦିରକୁ ଚାଲି ଯାଇଥିଲା । ଭାବିଲି କଲ୍ୟାଣୀକୁ ଥରେ ପଚାରି ଦେବାଟା ଭଲ ହେବ । ମୁହାଁମୁହିଁ କଥା ହୋଇଯିବାଟା ସବୁଠୁ ଭଲ । କଲ୍ୟାଣୀ ବିରୋଧ କଲେ ବି ମାନୁ ତା' କଥା ନ ମାନି ମୋ ସହ ଚାଲିଯିବା ପାଇଁ ଦୃଢ଼ ନିଷ୍ପତ୍ତି ନେଇ ସାରିଥିଲା । ତେଣୁ କଲ୍ୟାଣୀକୁ ପଚାରିବା ବା ନପଚାରିବା ସେତେ ମହତ୍ତ୍ୱପୂର୍ଣ୍ଣ ନଥିଲା । କିନ୍ତୁ ମୋ ତରଫରୁ ମୁଁ ପଚାରିଦେବାଟା ଉଚିତ ଥିଲା । ଯଦି ତା'ର ବିରୋଧ ନଥାଏ ତେବେ ପଳେଇ ଯିବାର ଆବଶ୍ୟକତା ପଡ଼ିବନି ।

କଲ୍ୟାଣୀ ସେଇଠି ସାମ୍ନାରେ ବସିଥିଲା । ମୋ ପାଟିରୁ କିନ୍ତୁ କିଛି କଥା ବାହାରୁ ନଥିଲା । କେମିତି ଗୋଟାଏ ସଂକୋଚ ଲାଗୁଥିଲା । ଭଲ ହେଲା ସେ ହିଁ କଥା ଆରମ୍ଭ କଲା ।

'ବସ ।'

'ତୁମେ ଥରେ ମୁମ୍ବାଇ ଆସୁନ ?'

'ମୁଁ..... ? ପ୍ରଭୁ ହେ.....' ଭାଙ୍ଗି ରଖିଥିବା ପାନକୁ ପାଟିରେ ପୁରେଇ ଦେଇ ସେ ହସିଲା ।

'ତୁମ ଆଖିରେ ମୋତିଆ ବିନ୍ଦୁ ହୋଇଛି ତ, ସେଠି ଅପରେସନ

କରିଦିଅନ୍ତେ ।'

'ଅପରେସନ ହୋଇ ଆଉ କ'ଣ ହେବ ଯେ !'

ଅଭ୍ୟାସ ଅନୁସାରେ ବ୍ଲାଉଜ ଗଣ୍ଠି ଉପରେ ହାତ ବୁଲେଇ ଆଣି ସେ ଜୋରରେ ହସି ଉଠିଲା । ମୁଁ ଅପ୍ରସ୍ତୁତ ହୋଇ ପଡ଼ିଲେ ବି କହିଲି, 'ତୁମେ ଆସିଲେ ମାଆକୁ ବି ବହୁତ ଭଲ ଲାଗିବ ।'

'ହଁ, ଏ କଥାଟା କହିଲୁ ଯେ ମୋ ମନକୁ ପାଇଲା । ଦୁର୍ଗା ମୋତେ ଦେଖିଲେ ସତରେ ବହୁତ ଖୁସି ହେବ ।'

'ତାହେଲେ ମୋ ସାଙ୍ଗେ ଚାଲ, ପନ୍ଦର ଦିନ ସେଠି ରହି ଆସିବ ।'

'ବାପାରେ, ତୁ ମୁହଁ ଖୋଲି ଏତିକି କହିଲୁ, ମୁଁ ସବୁ ପାଇଗଲି । ଠାକୁରଙ୍କ ସେବା ଛାଡ଼ି ମୁଁ କ'ଣ କୁଆଡ଼େ ଯାଇପାରିବି ?

'ମାତ୍ର ପନ୍ଦରଟା ଦିନ ତ । ସେତିକି ଦିନ ଭିତରେ ଆଖିର ଅପରେସନ ବି ହୋଇଯିବ । ଖର୍ଚ୍ଚ କଥା ଆଦୌ ଚିନ୍ତା କରନାହିଁ । ସେତିକି ଦିନ ମାନୁ ଏଠି ଠାକୁରଙ୍କ କାମ ଚଳେଇ ନେବ ନି !'

'ମାନୁ ସବୁ ତୁଲେଇ ଦେବ । ମୁଁ ଜାଣିଛି । କିନ୍ତୁ, ବୁଢ଼ୀ ବୟସରେ ଆଖି ଅପରେସନ କରି ଆଉ କ'ଣବା ହେବ ?'

'ଏମିତି କାହିଁକି କହୁଛ ? ଆଖି ନଷ୍ଟ ହୋଇଯିବା ଅର୍ଥ ଅନ୍ୟ ଉପରେ ନିର୍ଭର କରି ରହିବା ।'

'ନାଇଁମ, ମୁଁ ପରା ଠାକୁରଙ୍କ ହୁକୁମ ପାଇଛି । ମୋ ଆଖି ଭଲ ହୋଇଯିବ ବୋଲି ଠାକୁର କହିଛନ୍ତି । ପ୍ରତିଦିନ ଠାକୁରଙ୍କ ପାଦୁକ ଆଖିରେ ଲଗାଉଛି ପରା ! ଆଗ ଅପେକ୍ଷା ଏବେ ଭଲ ଦିଶିଲାଣି ।'

ମୋ କହିବା କଥା ଅଯଥାରେ ଗଲା । ଠାକୁରଙ୍କ ପ୍ରତି କଲ୍ୟାଣୀର ଅଗାଧ ବିଶ୍ୱାସ । କିନ୍ତୁ ଠାକୁରଙ୍କ ପାଦୁକ ଲଗେଇଲେ ତା' ଆଖି ଠିକ ହୋଇଯିବ ବୋଲି ଭାବିବା ମୂର୍ଖାମି ନୁହେଁ ତ ଆଉ କ'ଣ ? କିନ୍ତୁ ତାକୁ ଏକଥା ବୁଝେଇବା ସମ୍ଭବ ନଥିଲା । ଯେତେ ଯାହା ହେଲେ ବି ପୁରୁଣା କାଳିଆ ଲୋକ । ତାଙ୍କର ବିଶ୍ୱାସ ସବୁ ଅନ୍ୟ ପ୍ରକାରର ।

ବହୁତ ସମୟଯାଏ ମୁଁ ଚୁପହୋଇ ବସିଲି । ତା'ପରେ ରୋକି ରୋକି ହୋଇ ପଚାରିଲି, 'ମାନୁକୁ ତା'ହେଲେ ନେଇଯିବି ସାଙ୍ଗରେ ।'

'କୁଆଡ଼େ ?'

'ମୁମ୍ବାଇ, ଆଉ କୁଆଡ଼େ ?'

ସେ ମୁଣ୍ଡ ଟେକି ମୋତେ କଣେଇ କରି ଅନେଇଲା । କିଛି କହିଲାନି । ମୁଁ କିଛି ସମୟ ଚୁପ ହୋଇ ରହିଲି । ତା'ପରେ କହିଲି, 'ମାନୁକୁ ମୁଁ ବାହାହେବି !'

'ପ୍ରଭୁ ହେ... ।'

କଲ୍ୟାଣୀ ମୁଣ୍ଡରେ ହାତ ଦେଇ ହସିଲା ମୋ ଆଡ଼େ ଚାହିଁ । ତା'ର ସେ ଚାହାଣୀରେ ସମ୍ମତି ଥିଲା କି ଅସମ୍ମତି ଥିଲା ମୁଁ ବୁଝିପାରିଲିନି । ତଥାପି ପଚାରିଲି 'ଅସୁବିଧା କିଛି ନାହିଁ ତ !'

'କ'ଣ କହୁଛୁରେ ପୁଅ ତୁ ! ଦେବଦାସୀର ଝିଅର ବାହାଘର !'

'ହୋଇ ପାରିବନି ?'

'ନାଁ ।'

'କାହିଁକି ?'

'ଆମକୁ ଦେଖୁନୁ । ଆମେ ବାହା ହୋଇଛୁ କି ?'

'ତୁମ ବେଳ କଥା ଅଲଗା ଥିଲା । ଆଉ କ'ଣ ସେ ଯୁଗ ଅଛି ନାଁ ସେ କଥା ଅଛି ! ଏବେ ସବୁ ଝିଅ ବାହା ହେଉଛନ୍ତି ।'

'ହଁ ବାହା ହଉଛନ୍ତି । ବାହା ହୋଇସାରି ପସ୍ତଉଛନ୍ତି ।'

'କାହିଁକି ?'

'ଯମୁନାର କ'ଣ ହେଲା ?'

'କୋଉ ଯମୁନା ?'

' ଏ ପୋଷ୍ଟ ଅଫିସ କଡ଼ରେ ତା' ଘର । ଚନ୍ଦ୍ରିକାର ଝିଅ ସିଏ । ଚନ୍ଦ୍ରିକା ବି ମୋରି ଭଳି ଦାସୀଟିଏ ।'

'ତା'ର କ'ଣ ହେଲା ?'

'ଦି ଅକ୍ଷର ପାଠ ପଢ଼ିଥିଲା ତ ! ସେଥିପାଇଁ ନିଜକୁ ଭାରି ବୁଦ୍ଧିମତୀ ବୋଲି ଭାବୁଥିଲା । ଯିଏ ଯେତେ ବୁଝେଇଲେ ବି ବୁଝିଲାନି । ଜିଦ୍ଦି କରି ବାହାହେଲା । ଗାଁ ବାହାରେ ଯାଇ ।'

'କାହାକୁ ?'

ତା ଝିଆରୀ ର ପୁଅକୁ । ଅଲକ୍ଷଣୀ ନିଜର ତ ଜନ୍ମରୁ ଭାଗ୍ୟ ଖରାପ ! ତା

ସହିତ ଝିଅର ଭାଗ୍ୟକୁ ବି ପୋଡ଼ି ଜାଳି ପାଉଁଶ କରିଦେଲା ।'

'କାହିଁ କ'ଣ ହେଲା ?'

'କ'ଣ ଆଉ ହୋଇଥାଆନ୍ତା ? ଦେବଦାସୀ ଯଦି ବାହା ହୋଇ ଯିବ, ଠାକୁରଙ୍କ କୋପଦୃଷ୍ଟି ତା' ଉପରେ ପଡ଼ିବ କି ନାହିଁ ? ପତ୍ୟକ୍ଷ ଠାକୁର ପରା ! ପଚାଶ ପଚାଶ କୋଶ ଦୂରରୁ ଲୋକେ ଆସନ୍ତି ଦର୍ଶନ ପାଇଁ ! ତା ଛଡ଼ା ବାହାହୋଇ ଅଧିକା ଆଉ କ'ଣ ମିଳିବ ? ମୋତେ ଦେଖୁନୁ, ମୁଁ ବାହା ହୋଇଛି କି ? ହେଲେ ମୋର ଆଜି ଠାକୁର କ'ଣ କମ କରିଛନ୍ତି ? ଦି'ଓଳି ଦି'ମୁଠା ଖାଇବାରେ ନାଁ ପିନ୍ଧିବାରେ, କୋଉଥିରେ ଉଣା କରିଛନ୍ତି ?'

'ଠାକୁରଙ୍କ କୋପଦୃଷ୍ଟି ପଡ଼ି ଯମୁନାର ପୁଣି କ'ଣ ହେଲା ?'

'ବାହାଘର ହେବାର ବର୍ଷଟିଏ ପୁରିଥାଆନ୍ତା ଭଲା ! ଚନ୍ଦ୍ରିକାର ଝିଅ ସେଇ ଯମୁନା, ପାଗଳି ହୋଇ ଇଆଡ଼େ ସିଆଡ଼େ ବୁଲିଲା । ଖାଲି ପାଦରେ ପାଦ ଘଷି ଘଷି ଶେଷକୁ ମଲା । ଜୋଇଁ ପାଗଳ ହୋଇ ବରଗଛ ମୂଳେ ବସି ଭିକ ମାଗୁଛି । କେଡ଼େ ସୁନ୍ଦର ବିଡ଼ି ଦୋକାନ ତା'ର ଥିଲା ! ଏ ଅଞ୍ଚଳଯାକ ଖୋଜିଲେ ତା' ଭଳି ବିଡ଼ି ବଳିବା ଲୋକ କେହି ଗୋଟିଏ ବି ମିଳିବନି । ତାଙ୍କର ଏମିତି ଅବସ୍ଥା କାହିଁକି ହେଲା ଏଥର ବୁଝି ପାରିଲୁ ତ ?'

ମୁଁ କିନ୍ତୁ ଠିକରେ କିଛି ବୁଝି ପାରୁ ନଥିଲି । ତଥାପି ବି ସବୁ ଶୁଣି ସାରିଲା ପରେ ମନରେ ମୋର କେମିତି ଗୋଟାଏ ଭୟ ଆସିଯାଇଥିଲା ।

'ଭାଉ ଭଟ୍ଟଙ୍କ ନାଁ ତ ଶୁଣିଥିବୁ ତୁ । ତୋ ମାଆ ଜାଣିଛି ତାଙ୍କ ବିଷୟରେ ସବୁକିଛି । ତୁ ତୋ ମାଆକୁ ପଚାରିଲେ ସେ କହିବ ସବୁ । ଭାଉ ଭଟ୍ଟଙ୍କର କିଛି ଏମିତି ସେମିତି ନୁହଁ, ଖାନଦାନୀ ଘର । ମାନକରି ଘର ତାଙ୍କର । ଆଷାଢ଼ ଏକାଦଶୀ ଦିନ ଠାକୁରଙ୍କ ବିମାନ ତାଙ୍କ ଘରକୁ ଯାଏ । ଠାକୁର ସେଠି ପ୍ରସାଦ ପାଆନ୍ତି । କୋଉ ପୂର୍ବ ପୁରୁଷରୁ ଏ ପ୍ରଥା ଚଳି ଆସୁଛି । ତାଙ୍କ ଠାକୁର ଘରେ ପ୍ରତ୍ୟକ୍ଷ ବିଠୋବା ଅଛନ୍ତି । କିନ୍ତୁ କ'ଣ ହେବ ? ଭଟ୍ଟ ଗଙ୍ଗୁର ଝିଅ ସୁନ୍ଦରୀକୁ ବାହା ହୋଇ ପଡ଼ିଲେ । ଗଙ୍ଗୁ କିଏ କହିଲୁ ? ପୋଲ ସେ ପଟରେ ଥିବା ଦେବୀ ମନ୍ଦିରର ସେବିକା ଦେବଦାସୀ । ତୋ ମାଆ ସବୁ ଜାଣିଛି । ସାରା ଗାଁଟାର ଲୋକ ବିରୋଧ କଲେ । କିନ୍ତୁ ଭଟ୍ଟ କାହା କଥା କାନରେ ପୁରେଇଲେ ନାହିଁ । ଏକାଦଶୀ ଆସିଲା । ଠାକୁରଙ୍କଠାରୁ ହୁକୁମ ମିଳିଲା, ବିମାନ ଭଟ୍ଟଙ୍କ ଘରକୁ ଯିବନାହିଁ । ଦେବୀଙ୍କ ମନ୍ଦିର

ଯାଏ ବିମାନ ଗଲା । ସେଇଠୁ ବୁଲି ପଛକୁ ଫେରିଲା । ଛ'ମାସ ଭିତରେ ଭଟ୍ଟଙ୍କ ଦେହସାରା କ'ଣ ଫଳିଗଲା । ଦେହଟା ପୁରା ଫୁଲିଗଲା । ଦଶଖଣ୍ଡ ଗାଁରୁ କବିରାଜ ବଇଦ ସମସ୍ତେ ଆସିଲେ । କିନ୍ତୁ କୌଣସିଥିରେ ବି ତାଙ୍କ ରୋଗ ଭଲ ହେଲା ନାହିଁ । ଶେଷରେ ଭଟ୍ଟ ଯାଇ ନାକ ଘଷିଲେ ଠାକୁରଙ୍କ ପାଖରେ । ଅଧିଆ ପଡ଼ିଲେ । ଠାକୁରଙ୍କ ହୁକୁମ ହେଲା । ଆସ୍ତେ ଆସ୍ତେ ତାଙ୍କ ଦେହ ଭଲ ହେଲା । ସୁନ୍ଦରୀକୁ ଘରୁ ବାହାର କରିଦେଲେ । ପାଞ୍ଚଶହ ଟଙ୍କା ଖର୍ଚ୍ଚ କରି କାଶୀରୁ ଦୁଇଜଣ ବ୍ରାହ୍ମଣଙ୍କୁ ଡକାଇ ଆଣିଲେ । ସେମାନେ ଭଟ୍ଟଙ୍କୁ ଶୁଦ୍ଧ କଲେ । ଘର ଶୁଦ୍ଧ କଲେ । ଗୋବର ପାଣି ଓ ଗଙ୍ଗାପାଣିରେ ସାରା ଘର ଲିପା ପୋଛା ହୋଇ ପବିତ୍ର କରାଗଲା । ଭଟ୍ଟଙ୍କ ଦେହ ପୁରା ଭଲ ହୋଇଗଲା । ତା'ପର ବର୍ଷ ଠାକୁରଙ୍କ ବିମାନ ପୁଣି ଭଟ୍ଟଙ୍କ ଦୁଆରକୁ ଆସିଲା ।'

'ସୁନ୍ଦରୀର ପୁଣି କ'ଣ ହେଲା ?'

ସିଏ କୋଉଠୁ ଏତେ ସହଜରେ ମଶାଣିକୁ ଯିବ ? ସେମିତି ପଡ଼ିଛି ଦେବୀଙ୍କ ମନ୍ଦିରରେ । ଭଟ୍ଟ ବେଳେ ବେଳେ ସେଠିକୁ ଯାଆନ୍ତି । ଯିବା ଆସିବା କଲେ ଠାକୁରଙ୍କର ମନା ନାହିଁ । ଦେବଦାସୀ ରକ୍ଷିତା ହିସାବରେ ରହିଲେ ଠାକୁରଙ୍କ କୋପଦୃଷ୍ଟି ପଡ଼େ ନାହିଁ । କିନ୍ତୁ ବାହାଘର ହୋଇ ପାରିବ ନାହିଁ । ସେଥିରେ ବହୁତ ବାଧା ।'

'ମୁଁ ଗୋଟାପଣେ ନିର୍ବାକ ହୋଇ ଯାଇଥିଲି ଏସବୁ ଶୁଣିଶୁଣି । ବହୁତ କଷ୍ଟରେ ପଚାରିଲି, 'ତେବେ ତୁମର ମତାମତ କ'ଣ ?'

'ଠାକୁରଙ୍କର ଯାହା ଇଚ୍ଛା ମୋର ବି ସେଇୟା ଇଚ୍ଛା ।'

'ମାନେ ?'

'ବାହାଘର ଅଡୁଆରେ ତୁ ଆଦୌ ପଡ଼ନା । ତାକୁ ବି ଅଡୁଆରେ ପକାନା । ଠାକୁରଙ୍କର କୋପଦୃଷ୍ଟି ପଥରର ଗାର ଭଳିଆ । ମୋ ଝିଅର କିଛି ହୋଇଗଲେ ସେଥିପାଇଁ ମୋର ଚିନ୍ତା ନାହିଁ । ମୋତେ କେବଳ ତୋରି ଚିନ୍ତା । ଦୁର୍ଗାର ପୁଅ ତୁ । ପାଠ ଶାଠ ପଢ଼ିଛୁ ଏତେ । ଠାକୁରଙ୍କ କୋପଦୃଷ୍ଟି ପଡ଼ି ଆଜି ତୋର ଯଦି କିଛି ଭଲମନ୍ଦ ହୁଏ, ମୁଁ ଆଉ ଏ ଗାଁରେ ରହିବପାରିବି ତ ? ତୋ ମାମୁଁଙ୍କୁ ମୁହଁ ଦେଖେଇବି କେମିତି ? ମୁଁ କେବଳ ତୋରି କଲ୍ୟାଣ କଥା ଚିନ୍ତା କରୁଛି । ତୁମ ଜାତିରେ ଗୋଟିଏ ଭଲ ଝିଅ ଦେଖି ବାହା ହୋ । ଆମକୁ ବାହାଘରରେ ଡାକିବୁ । ମାନୁକୁ ଭଲ ଶାଢ଼ୀ ବ୍ଲାଉଜ ଦେବୁ । ବାସ୍, ଆମକୁ ସେଇଥିରେ ସବୁ ମିଳିଯିବ ।'

ମୋ ଆଖିରେ ଲୁହ ଆସିଗଲା । ସେ ଜାଣି ନପାରିବା ଭଳି ରୁମାଲ ନେଇ ଆଖି ପୋଛି ଦେଲି ମୁହଁ ପୋଛିବାର ବାହାନା କରି ।

'ଆଉ ଗୋଟିଏ କଥା କହିବି । ଠାକୁରଙ୍କ ପାଖରେ ନଡ଼ିଆଟିଏ ଥୋଇ ତାଙ୍କ ଅନୁମତି ନେଇଆସ । ତୋ ଇଚ୍ଛା ଯେତେବେଳେ ହେବ ବର୍ଷରେ ଥରେ ଅଧେ ଆସିବୁ । ତା' ପେଟପାଟଣା ପାଇଁ ଯାହା ତୋର ଇଚ୍ଛା ହେବ ଦେବୁ । ତୋ ସ୍ତ୍ରୀର ପୁରୁଣା ଶାଢ଼ୀ ଦେଲେ ସୁଦ୍ଧା ଚଳିବ । ଠାକୁରଙ୍କ ସାକ୍ଷରେ ସେ କିନ୍ତୁ ତୋ'ର ହୋଇ ରହିବ । କେବଳ ତୋର । ସେ କଥା ମୁଁ ଦେଖିବି । ତାକୁ ଏମିତି ରଖିଲେ ଠାକୁରଙ୍କର କିଛି ଆପତ୍ତି ରହିବନି । କିନ୍ତୁ ସେ ବାହାଘର ଭୂତକୁ ମୁଣ୍ଡରୁ ବାହାର କରିଦେ ।'

କଲ୍ୟାଣୀ କହିସାରି ଉଠିପଡ଼ି ଘର ଭିତରକୁ ଗଲା ଏବଂ ଭିତରୁ ନଡ଼ିଆ ଗୋଟିଏ ନେଇ ଆସିଲା ।

'ନେ, ଏ ନଡ଼ିଆ ନେଇ ଠାକୁରଙ୍କ ପାଖରେ ରଖିବୁ । ତୋ ମନ ଭିତରେ ଯାହା କିଛି ଅଛି ସବୁ ତାଙ୍କ ଆଗରେ କହିବୁ । ମଝିରେ ମଝିରେ ଏଠିକୁ ଆସିବୁ ବୋଲି ମଧ୍ୟ କହିବୁ । ନିଶ୍ଚୟ ତୋତେ ଠାକୁରଙ୍କ ଆଶୀର୍ବାଦ ମିଳିବ ।'

'ନାଁ, ଥାଉ ।' ମୋ କଣ୍ଠରୁଦ୍ଧ ହୋଇଯାଉଥିଲା ।

'ଆମ ନଡ଼ିଆ ବୋଲି ନଉନୁ କି ? ଆରେ, ଏ ପରା ତୋ ମାମୁଁ ଘର ନଡ଼ିଆ !'

ମୁଁ କିଛି କହିଲିନି । ଯିବାପାଇଁ ଉଠି ଛିଡ଼ାହେଲି । ଭଲ ହେଲା ସେତେବେଳଯାଏ ମାନୁ ଫେରି ନଥିଲା ମନ୍ଦିରରୁ । ସେ ଆସିଥିଲେ ନିଶ୍ଚୟ କାନ୍ଦି ଥାଆନ୍ତା ଏ ସବୁ ଶୁଣି । ତା ସହିତ ମୁଁ ବି କାନ୍ଦିଥାନ୍ତି ।

ଆସ୍ତେ ଆସ୍ତେ ପାଦ ପକେଇ ମୁଁ ଅଗଣାକୁ ଆସିଲି । ବାଉଁଶ ଡ଼େଇଁ ରାସ୍ତାକୁ ଆସି ଘର ଆଡ଼କୁ ମୁହଁ କରି ଚାଲିବା ଆରମ୍ଭ କଲାବେଳକୁ ତୁଳସୀ ଗଛକୁ ଟେକୁ ଟେକୁ କଲ୍ୟାଣୀ କହିଲା, 'ବାବୁଲ, ତୁ ଖରାପ ଭାବିବୁନି । ଯିବା ଆସିବା କର । କ'ଣ କରିବା, ଠାକୁରଙ୍କ ନୀତି ନିୟମ ମାନି ଚଳିବାକୁ ତ ପଡ଼ିବ !'

ସେତେବେଳକୁ ଚାରିଆଡ଼ ଅନ୍ଧାର ହୋଇଯାଇଥିଲା । ମୁଁ ତା' ଭିତରେ ହଜିଗଲି । ମନ ହେଉଥିଲା ସମୁଦ୍ର କୂଳକୁ ଯାଇ ଖୁବ ଜୋରରେ ଚିତ୍କାର କରିବାପାଇଁ ।

*

ଯାତ୍ରାର ପୂର୍ବଦିନ, ମୁଁ ଓପରଓଳି ମନ୍ଦିର ଆଡ଼େ ଗଲି । ମନ୍ଦିରର ହତା ଭିତରେ

ଦୋକାନୀମାନେ ଛୋଟ ଛୋଟ ମଣ୍ଡପ କରୁଥିଲେ ନିଜ ନିଜ ଦୋକାନ ବସାଇବା ପାଇଁ । ମନୋହରୀ ଦୋକାନ, ଗୁଡ଼ିଆ ଦୋକାନ, ଚୁଡ଼ି ଦୋକାନ, ଖେଳନା– ପ୍ରତିବର୍ଷ ଏ ସବୁ ବସେ ଯାତ୍ରାରେ । ମନ୍ଦିର ଭିତରୁ ମାନୁ ବାହାରକୁ ଆସୁଥିଲା । ଶାଢ଼ୀ ଟିକେ ଉଚ୍ଚା କରି ଖୋସି ଦେଇଥିଲା । ପଣତ କାନିକୁ ଅଣ୍ଟାରେ ଗୁଡ଼େଇ ଖୋସିଥିଲା । ମୋ ଉପରେ ଆଖି ପଡ଼ିଯିବାରୁ ହସିଦେଲା । ମୁଁ କିନ୍ତୁ ଆଗ ପରି ଆଉ ହସି ପାରିଲିନି । ଓଜନିଆ! ପିଲିସଜଟିଏ ହାତରେ ଧରି ମାନୁ କହିଲା, 'ମାଆ ମନା କରିଦେଲା ନାଁ ?'

'ତୁମେ କେମିତି ଜାଣିଲ ?'

'ସାରାରାତି ଆମର ସେଇ ଚର୍ଚ୍ଚା ଚାଲିଥିଲା ।'

'ସେଇଠୁ ?'

'ସେଇଠୁ ଆଉ କ'ଣ ?'

'ତୁମର କ'ଣ ମତ ?'

'ଖାଲି ତୁମେ କୁହ, ଏଇଠି ଏ ଦୀପକୁ ଥୋଇଦେଇ ତୁମ ପଛେ ପଛେ ଚାଲିଯିବି । ଯୁଆଡ଼େ ନେବ ସିଆଡ଼େ । ତାପରେ ଆମେ ଦୁହେଁ ଆଉ ଆମର ଭାଗ୍ୟ !'

'ହଉ ହଉ, ଆଗ ଠାକୁରଙ୍କଠାରୁ ହୁକୁମ ଆଣେ ।'

ମୁଁ ହସିବାକୁ ଚେଷ୍ଟା କଲି । କିନ୍ତୁ ପାରିଲିନି । ମନ୍ଦିରକୁ ଯାଇ ପ୍ରଦକ୍ଷିଣା କଲି । ଚରଣାମୃତ ପାଇଲି । ତା'ପରେ ନାରାୟଣ ନନାଙ୍କୁ କହିଲି, 'ନନା, ଗୋଟିଏ ହୁକୁମ ନେବାର ଅଛି ।'

'ହଉ ହଉ, ସେଥିରେ କ'ଣ ଅଛି ।'

'କେବେ କରିବା ? କାଲି ?'

'କାଲି ତ ଯାତ୍ରା । ଠାକୁରଙ୍କ ଦେହରେ ଲୁଗା ଚଢ଼ାହେବ ।'

'ତା'ହେଲେ କେବେ କରିବା କୁହ ।'

'ଯଦି କହୁଛ, ଏବେ କର ।'

'ହଉ ତା' ହେଲେ ତୁମେ ସବୁ ବ୍ୟବସ୍ଥା କର ଏବେ ।'

ନାରାୟଣ ନନା ସାଙ୍ଗେ ସାଙ୍ଗେ ହୁକୁମ ପାଇଁ ଚଢ଼ା ହେଉଥିବା ସେଇ ନିର୍ଦ୍ଦିଷ୍ଟ ପତ୍ରକୁ ଖଣ୍ଡ ଖଣ୍ଡ କରି ପାଣିରେ ଭିଜେଇଲେ ଏବଂ ଠାକୁରଙ୍କ ଖୋଲା ଛାତି ଉପରେ ଥାପିଲେ ।

'କ'ଣ ପଚାରିବୁ ?'

'ମନରେ ଗୋଟିଏ କଥା ଭାବିଛି । ସେମିତି କରିବି କି ନାହିଁ ?'

'ହାତ ଯୋଡ଼ ।'

ନନା ମୋତେ ହାତ ଯୋଡ଼ିବା ପାଇଁ କହି ନିଜେ ବି ହାତ ଯୋଡ଼ିଲେ ଏବଂ ଠାକୁରଙ୍କ ନାଁ ଉଚ୍ଚାରଣ କରି ଲମ୍ବା ମନ୍ତ୍ର ପଢ଼ିବା ଆରମ୍ଭ କରିଦେଲେ ।

ପଇସା ଭଳି ଦିଶୁଥିବା ସେଇ ଶାଗୁଆ ପତ୍ରର ଟୁକୁଡ଼ା ସବୁକୁ ମୁଁ ଲକ୍ଷ୍ୟ କରି ବସିରହିଲି ହାତଯୋଡ଼ି ଦେଇ ।

କିଛି ସମୟ ପରେ ବାଁ ପାଖ ଛାତିରୁ ଦୁଇଟି ପତ୍ରର ଟୁକୁଡ଼ା ତଳକୁ ଖସିଲା ।

'ନନା –' ମୁଁ ଅଧୈର୍ଯ୍ୟ ହୋଇ କହିଲି ।

ଠାକୁରଙ୍କ ଛାତିକୁ ଅନେଇ ନନା କହିଲେ, 'ଉତ୍ତର ନକରାତ୍ମକ । ମନରେ ଯାହା ବି ଭାବିଛୁ ଆଦୌ କରିବା ଠିକ ହେବନି । ଯଦି କରୁ ମଙ୍ଗଳ ହେବ ନାହିଁ ।'

ତାଙ୍କ କଥା ଶୁଣି ମୁଁ ଗୋଟାପଣେ ଭାଙ୍ଗି ପଡ଼ିଲି । ନିସ୍ତେଜ ହୋଇ କାନ୍ଥ ଆଡ଼କୁ ଆଉଜି ପଡ଼ିଲି । ଉଠିବା ପାଇଁ ଦେହରେ ଶକ୍ତି ନଥିଲା ଭଳି ଲାଗୁଥିଲା ।

'ଆଉ ଗୋଟିଏ ଉପାୟ ଅଛି–' ନାରାୟଣ ନନା କହିଲେ ।

'କ'ଣ ?' ଦେହରେ ମୋର ହଠାତ ଯେମିତି ଜୀବନ ସଂଚାର ହେଲା ।

'ଗୋଟିଏ କୁକୁଡ଼ା ବଳିଦେଇ ଗ୍ରହକଷ୍ଟ ଦୂର କରିହେବ କି ନାହିଁ ବୋଲି ମଧ୍ୟ ପ୍ରଶ୍ନ କରାଯାଇପାରିବ ।'

'ହଉ ତେବେ ପଚାର –'

ନାରାୟଣ ନନା ପୁଣି ପତ୍ରର ଗୋଲ ଗୋଲ ଟୁକୁଡ଼ା କରି ଠାକୁରଙ୍କ ଦେହରେ ଲଗାଇଲେ । କୁକୁଡ଼ା ବଳିଦେଲେ ବିଘ୍ନ ସବୁ କଟିଯିବ କି ବୋଲି ପ୍ରଶ୍ନ କରି ମନ୍ତ୍ରବୋଲିବା ଆରମ୍ଭ କରିଦେଲେ ।

ମୁଁ ପୁଣିଥରେ ହାତଯୋଡ଼ି ବସିଲି । ତଣ୍ଟି ଶୁଖିଗଲା ଭଳି ଲାଗୁଥିଲା । ଠାକୁର ଏଥର 'ହଁ'ରେ ଉତ୍ତର ଦିଅନ୍ତୁ ବୋଲି ପ୍ରାଣପଣେ ପ୍ରାର୍ଥନା କରୁଥିଲି ।

ଏଥର ବି ଦୁଇଟି ଟୁକୁଡ଼ା ଖସିଲା । ପତ୍ର ଆଡ଼କୁ ଲକ୍ଷ୍ୟ କଲାବେଳେ ମୋତେ ଠାକୁରଙ୍କ ମୂର୍ତ୍ତି ହଜିଗଲା ପରି ଲାଗିଲା ।

'ନନା–'

'ନାଇଁରେ, ମନର ଇଚ୍ଛା ତୋର ପୂର୍ଣ୍ଣ ହେବନାହିଁ । ଯଦି ବି ତୁ ଜବରଦସ୍ତି

ସେ କାମ କରିବାପାଇଁ ଯାଉ ତେବେ ଅମଙ୍ଗଳ ହିଁ ହେବ । କିଛି ଭଲ ହେବନାହିଁ ।'

ଠାକୁରଙ୍କ ଥାଳିରେ ନନାଙ୍କ ପାଇଁ ଟଙ୍କା ଥୋଇ ଦେଇ ମୁଁ ଉଠି ଛିଡ଼ା ହେଲି । ନନା ସେ ଟଙ୍କା ନେଇ ତାଙ୍କ କାନ ମୂଳରେ ଗେଞ୍ଜି ଦେଇ ନିର୍ବିକାର ଭାବରେ ସେଠାରୁ ବାହାରି ଚାଲିଗଲେ ।

ବାହାରେ ଅନ୍ଧାର ଘେରି ଯାଇଥିଲା । ମନ୍ଦିର ଭିତର ଅପେକ୍ଷା ବାହାରେ ଅନ୍ଧାର କମ ଦିଶୁଥିଲା । ମନ୍ଦିର ଭିତରେ ହଲିବା ପାଇଁ ବି ଭୟ ଲାଗୁଥିଲା । ମନହେଉଥିଲା ସେଇ ଅନ୍ଧାର ଭିତରେ ଉଭାନ ହୋଇଯିବାପାଇଁ ।

ମାନୁ ଆସି ପହଞ୍ଚିଲା ପିଳିସଜ ଧରି ସେତିକିବେଳେ । ବୋଧହୁଏ ପିଳିସଜଟି ମାଜିଧୋଇ ସଫା କରିବାକୁ ଯାଇଥିଲା ।

'ଠାକୁରଙ୍କ ହୁକୁମ ପାଇଲ ?'

ମାନୁର ସେତିକି କଥା ମନ୍ଦିର ଭିତରେ ଗୁଞ୍ଜରିତ ହୋଇ ଉଠିଲା ।

'ହଁ ।'

'କ'ଣ ମିଳିଲା ଉତ୍ତର ? ହଁ ନା ନାଁ ?'

'ହଁ ବୋଲି ତ ମିଳିଲା ଉତ୍ତର ।'

ମାନୁ ହସିଲା ଖିଲି ଖିଲି ହୋଇ । ତାର ସେ ମଧୁର ହସର ଗୁଞ୍ଜରଣ ମନ୍ଦିରର ଗମ୍ଭୀରା ଭିତରେ ପ୍ରତିଧ୍ୱନୀତ ହୋଇ ଉଠୁଥିଲା ପରକୁ ପର ।

ସେ ପ୍ରତିଧ୍ୱନୀ ମୋ କଳିଜା ଭିତରେ ତୀର ପରି ଲାଗିଯାଉଥିଲା । ଲାଗୁଥିଲା ମୋ କଳିଜା ଆଉ ଗୋଟିଏ ହୋଇ ନାହିଁ, ଟିକି ଟିକି ହୋଇ ହଜାର ଖଣ୍ଡ ହୋଇ ଯାଉଛି ।

ଯିବାପାଇଁ ବାହାରିଲି । ମୋ ପଛେ ପଛେ ମାନୁ ବି ବାହାରକୁ ବାହାରି ଆସିଲା । ହାତରେ ଧରିଥିବା ପିଳିସଜଟି ମନ୍ଦିର ଭିତରେ ରଖିଦେଇ ଆସିବା ପାଇଁ ବି ଭୂଲି ଯାଇଥିଲା । ମନେ ପଡ଼ିଯିବାରୁ ପୁଣି ଯାଇ ରଖିଦେଇ ଆସିଲା ।

ମୁଁ ବାହାରେ ଛିଡ଼ା ହୋଇଥିଲି ତାକୁ ଅପେକ୍ଷା କରି । ଆସୁ ଆସୁ କହିଲା, 'ମନଧ୍ୟାନ ଦେଇ ଏକାଗ୍ରଚିତ୍ତରେ ମୁଁ ଠାକୁରଙ୍କ ସେବା କରି ଆସୁଛି । କେବେ ବି ସେ ମୋର କିଛି ଅମଙ୍ଗଳ କରିବେ ନାହିଁ ।' ଚୁପ ହୋଇଗଲା ସେ ଏତିକି କହିସାରି । ସେମିତି ମୋ ପାଖରେ ଛିଡ଼ାହେଲା କିଛି ସମୟଯାଏ । ଶେଷରେ ମୁଁ ପାଟି ଖୋଲିଲି ।

'ଯାଉଛି—'

'ଆସୁଛି ବୋଲି କୁହ ।'
'ହଉ, ଆସୁଛି ।'
ଏତିକି କହି ମୁଁ ଅନ୍ଧାର ଭିତରେ ମିଶିଗଲି ।

*

ରାତିରେ ଯାତ୍ରା ଖୁବ ସରଗରମ ହୋଇପଡ଼ିଲା । ଦୋକାନ ବଜାର ସବୁଠି ଭିଡ଼ । ମନ୍ଦିର ଚାରିପାଖରେ ଦୁଇ ତିନି ହଜାର ଲୋକ, ରଙ୍ଗବେରଙ୍ଗ ଲୁଗା ପିନ୍ଧି ବେଶପୋଷାକ ହୋଇ ବେଶ ଗହଳି କରିଥିଲେ । ସେମାନଙ୍କ ଭିତରେ କେବଳ ଏଇ ଗାଁର ଲୋକ ତ ନଥିଲେ, ଆଖପାଖ ଦଶଖଣ୍ଡ ମୌଜାର ଲୋକ ସେଠି ଏକାଠି ହୋଇଥିଲେ । ସ୍ତ୍ରୀ ଲୋକସବୁ ମୁଣ୍ଡରେ ଅବୋଲି ଫୁଲର ଗଜରା, ଜୁଇ ଫୁଲର ଗଜରା ଆଉ କେତକୀ ଫୁଲ ବେଶ ଭଲଭାବେ ସଜେଇକି ଲଗେଇଥିଲେ । ଫେଣାଏ ଫେଣାଏ କଦଳୀ କିଣି ଠାକୁରଙ୍କ ପାଖରେ ଭୋଗ ଲଗେଇବା ପାଇଁ ଯାଉଥିଲେ ।

କେତେ ପ୍ରକାରର ଦୋକାନ ବସିଥିଲା ସେଠି । ଗୁଡ଼ିଆ ଦୋକାନରେ ମିଠେଇ, ଜଲେବି, ନିମିକି ଇତ୍ୟାଦି ସଜାହୋଇ ରହିଥିଲା । ଚିନିପାଗରେ ଛୋଟ ଛୋଟ ବୋତମ ଭଳି କରି ସେଥିରେ ମାଳ ତିଆରି କରି ବିକୁଥିଲେ । ଲୋକେ ତାକୁ ହିଁ ବେଶୀ କିଣୁଥିଲେ । ଗୋଟିଏ ଯାଗାରେ କାଚକଡାର ଖେଳନା ସବୁ ମିଳୁଥିଲା । ତା' ସେପଟକୁ ଗୋଟିଏ ଲୋକ ବେଲୁନ ଧରି ବସିଥିଲା । ଛୋଟ ଛୋଟ ପିଲା ସବୁ ମା' ବାପା ମାନଙ୍କ ସାଥିରେ ସେଠି ଭିଡ଼ ଜମେଇଥିଲେ । ଆଉ ଟିକିଏ ଆଗକୁ ଚୁଡ଼ି ବିନ୍ଦିର ଦୋକାନରେ ଥିଲା ଝିଅମାନଙ୍କର ଗହଳି । ତା ସାମ୍ନାରେ ପୁରୀ, ତରକାରୀ, ପକୁଡ଼ି, ଘୁଘୁନି ଓ ଚାହା, କଫିର ଦୋକାନ ଦିଶୁଥିଲା । ସବୁଠୁ ବେଶୀ ଭିଡ଼ ସେଇଠି ଥିଲା । ମଝିରେ ମଝିରେ ମନ୍ଦିର ହତାର ଗୋଟିଏ କୋଣରେ ବସିଥିବା ବାଜାବାଲା ତାଙ୍କ ଢ଼ୋଲମହୁରୀ ବଜେଇ ଦେଉଥିଲେ । ମନ୍ଦିର ସାମ୍ନାରେ ବସି ବଜଉଥିଲେ ସାହାନାଇବାଲା । କିନ୍ତୁ ଏ ଭିଡ଼ ଭିତରେ ସେ ସାହାନାଇର ଆବାଜ ଭଲଭାବେ ଶୁଭୁନଥିଲା । ଚାରିପଟେ ହୋ ହାଲ୍ଲା କାଉର ବାଉର ।

କଲ୍ୟାଣୀର ଅଗଣାରେ ଦୁଇ ଦୁଇଟା ମହମବତୀ ଲଗେଇ ଲୋକେ ଜୁଆ ଖେଳରେ ମାତି ଯାଇଥିଲେ । ଦଳକୁ ଦଳ ହୋଇ ବସିଥିଲେ ଅଲଗା ଯାଗାରେ । ତା ସହିତ ଭାଙ୍ଗବଟା ବି ଚାଲିଥିଲା । ପିଆ ବି ଚାଲିଥିଲା । ପଇସା ଥୋଇ ସାରି ହାତରେ ସାର ଚଳଉଥିଲେ ।

ଅଧରାତିରେ ଠାକୁରଙ୍କ ବିମାନ ବାହାରେ । ମନ୍ଦିର ଚାରିପାଖରେ ପ୍ରଦକ୍ଷିଣ କରି ସାରିବା ପରେ ଦଶାବତାର ନାଟକଟି ହେବାର ଥିଲା ଏ ବର୍ଷ । ନାଟକ ହେଲେ ପ୍ରାୟ ସକାଳ ପୂର୍ବରୁ ସରିବାର ସମ୍ଭାବନା ନାହିଁ ।

ମୁଁ ପାଗଳଙ୍କ ପରି ଭିଡ଼ ଭିତରେ ବୁଲୁଥିଲି । କିଛି ଖେଳିବାପାଇଁ ମନ ହେଉନଥିଲା । ଜୁଆ ପ୍ରତି ତ ମୋର ପ୍ରଥମରୁ ଘୃଣା । ଗୁଡ଼ିଆ ଦୋକାନରେ ବସି କିଛି ଖାଇବା ପାଇଁ ମଧ ଆଗ୍ରହ ଆସୁ ନଥିଲା । ଅନ୍ୟମନସ୍କ ଭାବରେ ମନ୍ଦିରର ଚାରିପାଖରେ ବୁଲି ସାମ୍ନାପଟରେ ଆସି ଛିଡ଼ା ହେଉଥିଲି । କିଛି ସମୟ ସେମିତି ରହିବା ପରେ ପୁଣି ଥରେ ଭିଡ଼ ଭିତରେ ମିଶିଯାଉଥିଲି ।

ମଝିରେ ଲଖୋବାକୁ ଦେଖିଲି । ଦୁଇ କାନ୍ଧରେ ଦୁଇ ଛୁଆଙ୍କୁ ବସେଇ ଏ ଦୋକାନ ସେ ଦୋକାନ ହେଉଥିଲା । ତା ପାଖକୁ ଯାଇ ଦୁଇଟି ପିଲାଙ୍କ ହାତରେ ଗୋଟିଏ ଗୋଟିଏ ଟଙ୍କା ଧରେଇଦେଲି । ହାତରେ ଟଙ୍କା ପଡ଼ିଯିବା ମାତ୍ରେ ହସି ହସି ଦି'ଜଣଯାକ କାନ୍ଧରୁ ଓହ୍ଲେଇ ତଳକୁ ଆସି ପାଖରେ ଥିବା ଖେଳନା ଦୋକାନ ପାଖକୁ ଦଉଡ଼ିଗଲେ । ଲଖୋବା ମୋ ଆଡ଼େ ଚାହିଁ ହସିଦେଇ ସେ ପିଲାଙ୍କ ପଛେ ପଛେ ଚାଲିଗଲା ।

ଥରକ ପାଇଁ କଲ୍ୟାଣୀ ଘର ଆଡ଼େ ବି ଗଲି । ଘର ଭିତର ଅନ୍ଧାର ଦିଶୁଥିଲା । ବାହାର ଅଗଣାରେ କିନ୍ତୁ ଜୁଆଡ଼ିଙ୍କର ପଶାପାଳି ଖୁବ ଜମିଥିଲା । ଖେଳାଳୀଙ୍କର ସଂଖ୍ୟା ଯା ଭିତରେ ଆହୁରି ବଢ଼ି ଯାଇଥିଲା ।

ସେତିକିବେଳେ ପୋଷ୍ଟମାଷ୍ଟର ଦେଖା ହୋଇଗଲେ । କହିଲେ 'ଘରେ କେହି ନାହାନ୍ତି । ଆଜି ତ ତାଙ୍କର ସବୁକାମ ମନ୍ଦିରରେ ।'

ମୁଁ କିଛି କହିଲିନି ।

ଅଳ୍ପ ସମୟ ପରେ ଜୋର ଜୋରରେ ଢୋଲ ବାଜିବାର ଶବ୍ଦ ଶୁଭିଲା । ମନ୍ଦିର ହତା ଭିତରୁ ନାଗରା ବାଜିବାର ଶବ୍ଦ ବି ଶୁଭିଲା । ତା' ସାଙ୍ଗକୁ ଦୋମୁହାଁ ତୁରୀ ବାଜି ଉଠିଲା କାନ ତାବ୍ଦା କରି ।

ମନ୍ଦିର ଭିତରୁ ଠାକୁରଙ୍କ ବିମାନ ବାହାରକୁ ଆସୁଥିଲା । ବିମାନ ଚାରିପାଖରେ ଥିଲା ଲୋକଙ୍କର ପ୍ରବଳ ଭିଡ଼ । ସ୍ତ୍ରୀ ପୁରୁଷ ପିଲା ବୁଢ଼ା ସମସ୍ତେ ଥିଲେ ସେ ଭିଡ଼ ଭିତରେ । ଅନେକ ଲୋକ ପିଲାମାନଙ୍କୁ କାନ୍ଧରେ ବସେଇଥିଲେ । ମାଆମାନଙ୍କ କୋଳରେ ଥିବା ଛୁଆମାନେ ଭିଡ଼ରେ ଅଣନିଶ୍ୱାସୀ ହୋଇ ଭେଁ ଭେଁ ରଡ଼ି ଛାଡୁଥିଲେ ।

ବିମାନ ପାଖକୁ ଯାଇ ବିମାନ ଭିତରେ ବସିଥିବା ଠାକୁରଙ୍କ ରୂପାର ବିଗ୍ରହ ଦେଖିବାକୁ ସମସ୍ତଙ୍କର ଠେଲାପେଲା ଚାଲିଥିଲା । ସେଇ ଠେଲାପେଲା ଭିତରେ କାହା ପାଦକୁ କିଏ ମାଡ଼ି ଦେଲାଣି ତ କାହା କାନ୍ଧ ଉପରୁ ଗାମୁଛା ଟାଣି ହୋଇ ତଳକୁ ପଡ଼ିଲାଣି - ଏଇ ସବୁ କଥାକୁ ନେଇ ପାଟିତୁଣ୍ଡ ଗାଳିମନ୍ଦ ବି ଚାଲିଥିଲା ।

ବିମାନଟି ପୁରାପୁରି ବାହାରକୁ ଆସିଯାଇଥିଲା ମନ୍ଦିରର ହତା ଡ଼େଇଁ । ଆଗରେ ଢ଼ୋଲିଆ ଢୋଲ ବଜଉଥିଲେ, ତାଙ୍କ ପଛକୁ ସହନାଇ ବାଲା ସହନାଇ ବଜଉଥିଲେ । ଅଣ୍ଟାରେ ମଖମଲି ପଟା ବାନ୍ଧି ଦୁଇଜଣ ପଟାଦାର ରୂପାର ଦଣ୍ଡ ଧରି ଚାଲିଥିଲେ । ତାଙ୍କ ପଛକୁ କାନ୍ଧରେ ମଠାର ଚାଦର ପକେଇ ଚାରି ପାଞ୍ଚଜଣ ବ୍ରାହ୍ମଣ । ତାଙ୍କ ପଛକୁ ଯାଉଥିଲା ମଖମଲି ଚାନ୍ଦୁଆରେ ସଜାହୋଇଥିବା ବିମାନ । ଆଗରେ ଦୁଇଜଣ ଓ ପଛରେ ଦୁଇଜଣ ବିମାନକୁ କାନ୍ଧେଇ ଥିଲେ । ଆଗପଛ ହୋଇ ବିମାନ ପଛେ ପଛେ ଚାଲିଥିଲେ ମାମୁଁ ଓ ସାଙ୍ଗରେ ଆହୁରି କେତେଜଣ ମାନ୍ୟଗଣ୍ୟ ଲୋକ ।

ମନ୍ଦିର ହତା ଭିତରୁ ବିମାନ ବାହାରକୁ ଆସି ସାରିଥିଲେ ସୁଦ୍ଧା ତା ପାଖକୁ ଯିବା ସମ୍ଭବ ହେଉ ନଥିଲା । ମଝିରେ ମଝିରେ ବିମାନ ରହିଯାଉଥିଲା । ଢ଼ୋଲ ବି ଥମି ଯାଉଥିଲା । ବ୍ରାହ୍ମଣମାନେ ମନ୍ତ୍ର ପଢୁଥିଲେ । ଦେବଦାସୀମାନେ ଚାମର ବୁଲଉଥିଲେ । ବିମାନର ଦୁଇପାଖରେ ଦେବଦାସୀମାନେ ହାତରେ ବନ୍ଦାପନାର ଥାଳି ଓ ଚାମର ଧରି ନାଚି ନାଚି ଚାଲିଥିଲେ । ବ୍ରାହ୍ମଣଙ୍କ ଶ୍ଳୋକ ବୋଲିବା ସରିଯିବା ପରେ ଦେବଦାସୀମାନେ ଭଜନ ଆରମ୍ଭ କରି ଦେଉଥିଲେ । ତା'ପରେ ପୁଣି ଢ଼ୋଲ ନାଗରା ଭେରୀ ତୁରୀ ସବୁ ବାଜି ଉଠୁଥିଲା ଏବଂ ବିମାନ ଆଗକୁ ଯାଉଥିଲା ।

ଟିକେ ଟିକେ ଆଗକୁ ଯାଇ ଭିଡ଼ ଭିତରେ ମୁଁ ଆସ୍ତେ ଆସ୍ତେ ବିମାନର ପାଖ ହେଉଥିଲି । ମୋ ସାମ୍ନାରେ ଏବେ ଥିଲେ ଚାରିଜଣ ଦେବଦାସୀ । ସେମାନଙ୍କ ଭିତରୁ ମୁଁ ଜଣକୁ କାହାକୁ ବି ଚିହ୍ନି ନଥିଲି । ପୁଣି ସେଠୁ ଆସ୍ତେ ଆସ୍ତେ କରି ପଛପଟେ ବୁଲି ଆର ପାଖକୁ ଗଲି ।

ସେ ଭିଡ଼କୁ ଠେଲି ପେଲି ପଶିଲା ବେଳକୁ ମୁଁ ପୂରା ଅଣନିଶ୍ୱାସୀ ହୋଇ ପଡ଼ିଥିଲି । ଆର ପାଖରେ ପହଞ୍ଚିଲା ବେଳକୁ ସେଠି ମଧ୍ୟ ଚାରିଜଣ ଦେବଦାସୀ ମୋ ସାମ୍ନାରେ ଥିଲେ । ତା ଭିତରେ କଲ୍ୟାଣୀ ଥିଲା । ଓଃ, ସତେକି ମହାରାଣୀ ! ତା' ପାଖକୁ ମହାନନ୍ଦା । ଜରିଧଡ଼ିଲଗା ପାଟ ଶାଢ଼ୀଟିଏ ପିନ୍ଧିଥିଲା । ଶିଉଳି ରଙ୍ଗର । ତା

ଉପରେ ବୁଟି ଥିବା ଶାଲଟିଏ । ହାତରେ କାଚଚୁଡ଼ି ସହିତ ବାହୁଟି ଓ କଙ୍କଣ । ଗଳାରେ ସୁନାର ଚାପସରି ଓ ହାର । କାନରେ ଝୁମୁକା । ବେଣୀରେ ସଜଫୁଲର ଲମ୍ବା ଗଜରା । ନାକରେ ମୋତିର ନୋଥ । ହାତରେ ପଞ୍ଚଆରତି । ବାହୁରେ ଆରମଲେଟ ।

କଲ୍ୟାଣୀର ମନା ମାନିବାକୁ ମନ ଆଉ ସ୍ଥିର ହେଉ ନଥିଲା । ପଛେ ପଛେ ଯାଇ ମାନୁର ପଣତ କାନିକୁ ଆଣି ମୋ ପଞ୍ଜାବୀ ବୋତାମରେ ଗଣ୍ଠି କରିଦେବି ବୋଲି ଭାବିନେଲି । ସାମ୍ନାରେ ଠାକୁରଙ୍କ ବିମାନ ଥିବା କଥା ବି ମୋର ଆଉ ଖିଆଲ ହେଉ ନଥିଲା । ମୁଁ ପାଗଳଙ୍କ ପରି ମହାନନ୍ଦାକୁ ଚାହିଁ ରହିଥିଲି । ତା'ର କିନ୍ତୁ ମୋ ପ୍ରତି ଲକ୍ଷ୍ୟ ନଥିଲା । ତା' ହାତରେ ଥିବା ପଞ୍ଚଆରତି ଉପରେ ହିଁ ତା'ର ଦୃଷ୍ଟି ନିବଦ୍ଧ ଥିଲା । ସଂପୂର୍ଣ୍ଣ ଚେହେରା ତା'ର ଉଜ୍ଜ୍ୱଳ ଦେଖାଯାଉଥିଲା । ହାତରେ ଧରିଥିବା ପଞ୍ଚଆରତିରେ ଜଳୁଥିବା ସଳିତାର ପ୍ରକାଶରେ ତା ମୁହଁ ପୁରା ଲାଲ ଦିଶୁଥିଲା । ଥରକ ପାଇଁ ତା' ଦୃଷ୍ଟି ଆସି ମୋ ଉପରେ ପଡ଼ନ୍ତାନି ! ମୁଁ ମୋର ଡାହାଣ ଆଖିକୁ ଆସ୍ତେ କରି ବୁଜି ଦିଅନ୍ତି । ସେ ଲାଜରେ ଝାଉଁଳି ପଡ଼ନ୍ତା । ସେ ଲାଜର ରଙ୍ଗରେ ତା' ମୁହଁ ଗୋଲାପୀ ଦିଶନ୍ତା ! ଅବିର ପରି !

ପ୍ରଦକ୍ଷିଣା ସରିଗଲା । ଠାକୁରଙ୍କ ବିମାନ ମନ୍ଦିର ଭିତରକୁ ଗଲା । ଗହଳି ଏତେ ବଢ଼ିଗଲା ଯେ ତା ଭିତରେ ମନ୍ଦିର ଭିତରକୁ ପଶିବା ମୋ ପକ୍ଷରେ କଷ୍ଟକର ହୋଇପଡ଼ିଲା । ନିରୂପାୟ ହୋଇ ମୁଁ ସେମିତି ବାହାରେ ଛିଡ଼ାହେଲି । ଚିନିପାଗରେ ତିଆରି ହୋଇଥିବା ହାତୀ ଘୋଡ଼ାର ହାର ଗୋଟିଏ କିଣି ପକେଟରେ ରଖିଲି । କିଛି ସମୟ ଯାଏ ଏପଟ ସେପଟ ହେବାପରେ ବୋକାଙ୍କ ପରି ସେଇ ଗୋଟିଏ ଦିଗକୁ ଅନେଇ ଛିଡ଼ାହେଲି । ହଠାତ ତା ଜରିବୁଟି ଥିବା ଶାଲଟି ମୋ ଆଖିରେ ପଡ଼ିଲା । ମୋ ଦେହରେ ବାଜି ସେ ଆଗକୁ ଚାଲିଗଲା । ପଛକୁ ବୁଲି ମାନୁ ମୋତେ ଚାହିଁଲା । ତା ପଛରେ ଆସିବାକୁ ଠାରି ଦେଇ ଆଗକୁ ଚାଲିଗଲା । ମୁଁ ବି ଚାଲିଲି ତା' ପଛେ ପଛେ । ଚାଲୁ ଚାଲୁ ସେ କୁଆଡ଼େ ଅନ୍ଧାରରେ ମିଶିଗଲା । ତା ଶାଲରେ ଥିବା ଜରିର ବୁଟି ହିଁ କେବଳ ଚକଚକ ହୋଇ ଦିଶିଯାଉଥିଲା ସେ ଅନ୍ଧାର ଚିରି । ବେଣୀରେ ଲଗେଇଥିବା ଗଜରା ବି ଅସ୍ପଷ୍ଟ ହୋଇ ଦିଶୁଥିଲା । ମୁଁ ସେଇଆକୁ ଲକ୍ଷ୍ୟ କରି ଚାଲିଥିଲି । ବାଟ ଲାଗୁଥିଲା ପୁରା ଅଚିହ୍ନା । କୁଆଡ଼େ ଯାଉଛି ନିଜେ ବି ଜାଣି ପାରୁ ନଥିଲି । ଅନ୍ଧାରରେ ଉଣ୍ଡାଳି ଉଣ୍ଡାଳି ଯାଇ ପହଞ୍ଚିଲି

ତାଙ୍କ ଘର ପାଖରେ । କିନ୍ତୁ ଆଗପାଖ ନୁହଁ ପଛପାଖରେ । ମାନୁ ଟପ୍‌ପଟ କବାଟରେ କୋଳପ ଖୋଲିଲା । ଆମେ ଭିତରକୁ ପଶିଲୁ । ତା'ରି ଘର ଭିତରକୁ ଗଲୁ । ସେ ନଇଁପଡ଼ି ଦୀପ ଲଗେଇଲା । ନଅଗଜ ଶାଢ଼ୀ ଉପରେ ଶାଲ ଘୋଡ଼େଇ ହୋଇଥିଲା । ନାକର ନୋଥରେ ଜିଭ ଲଗାଇ କିଛି ଶୁଣିବାକୁ ଚେଷ୍ଟା କରୁଥିଲା ମାନୁ । ବାହାରେ ଜୁଆଡ଼ୀଙ୍କର ହସର ଶବ୍ଦ ଶୁଭୁଥିଲା । ମୁଁ ମାନୁକୁ ଚାହିଁଲି । ମୋର ଆଉ ଧୈର୍ଯ୍ୟ ରହିଲାନି । ସବୁ ଭୂଲିଗଲି । ଗୋଟେପଣେ ତାକୁ ମୋ ବାହୁବନ୍ଧନୀ ଭିତରକୁ ନେଇ ଆସିଲି । ସେ ଧୀରେ ଧୀରେ କହିଲା, 'ରୁହ –'

ଅବୋଲୀ ଫୁଲର ବଡ଼ ହାରଟିଏ କରି ରଖିଥିଲା । ସେଇଟିକୁ ଆଣି ମୋ ଗଳାରେ ଲମ୍ବାଇ ଦେଲା । ମୁଁ ବି ପକେଟରୁ ଚିନିପାଗରେ ହାତୀଘୋଡ଼ା ହାରଟିକୁ ନେଇ ତା ଗଳାରେ ଲମ୍ବାଇଦେଲି । ସେ ହାରରୁ ହାତୀଘୋଡ଼ା ଆଣି ଦୁହେଁ ଦାନ୍ତ ଲଗେଇ ପାଟି ମିଠାକଲୁ । ହାର ଗଳାରେ ପଡ଼ିବା ମାତ୍ରେ ମନର ଉନ୍ମାଦନା ଧୀରେ ଧୀରେ ଶୀତଳ ହୋଇ ପଡ଼ିଲା । ସତେକି ସେଇ ମୁହୂର୍ତ୍ତରେ ଆମର ବିବାହ ସଂପନ୍ନ ହେଲା ! ମନ ପବିତ୍ର ଲାଗୁଥିଲା । ମୁଁ ତା ମଥାକୁ ମୋ ଛାତି ଉପରକୁ ଆଉଜାଇ ଆଣି ଅନେକ ସମୟଯାଏ ଆଉଁସୁଥିଲି ।

ସେ ମୁହଁ ଉଠେଇଲା । କିନ୍ତୁ ତା ନାକର ନୋଥ ଯେମିତି ମୋର ଶତ୍ରୁ ହୋଇ ପଡ଼ିଥିଲା !

'ନୋଥ କାଢ଼ିଦେବି ?'

'ନାଁ, ଦରକାର ନାହିଁ, ସେମିତି ଥାଉ ।'

ଓଠର ସ୍ପର୍ଶ ଓଠ ଜାଣିଲା ।

ଆଉ ମୁଁ....

ସେ ହାତ ବଢ଼େଇ ଦୀପ ଲିଭେଇ ଦେଲା । କେତେବେଳେ ଯେ ରାତି ପାହିଗଲା କିଛି ଜଣା ପଡ଼ିଲାନି । ମୁହୂର୍ତ୍ତକ ପାଇଁ ବି ଆଖିରେ ପତା ପଡ଼ିନଥିଲା କିନ୍ତୁ !

ଅଳ୍ପସମୟ ପରେ ଅଗଣାର କୋଳାହଳ ବି ଶେଷ ହୋଇଗଲା । ମନ୍ଦିରରେ ଚାଲିଥିବା ଦଶ ଅବତାର ନାଟକ ବି ଶେଷ ହୋଇ ଯିବଣି । କାରଣ ଲୋକସବୁ ମନ୍ଦିରରୁ ବାହାରି ଘରମୁହାଁ ହୋଇ ଚାଲିଥିଲେ । ମାନୁ ଝରକା ଖୋଲିଲା । ଭୋର ହୋଇ ଆସୁଥିଲା । ମୁଁ ତରତର ହୋଇ ସେଇ ପଛପଟ କବାଟଟି ଖୋଲିଲି । ଏଠି

ବହୁତ ସମୟ ରହିଗଲିଣି ବୋଲି ଖିଆଲ ହେଲା ।

ପଞ୍ଜାବୀର ବୋତାମ ଦେଉ ଦେଉ ମୁଁ ବାହାରକୁ ଆସିଲି । ପଛକୁ ବୁଲି ଚାହିଁଲି । କବାଟ ପାଖରେ ଛିଡ଼ାହୋଇ ମାନୁ ତା' ଶାଢ଼ୀ ଠିକ କରୁଥିଲା ।

ମୁଁ କହିଲି, 'ଆସୁଛି...'

ସେ ମୋ କଥା ଶୁଣି ହସିଦେଲା । ମୁଣ୍ଡର ମୁକୁଳା କେଶକୁ ହାତରେ ସାଉଁଟି ଗଣ୍ଠି କରୁ କରୁ କହିଲା, 'ସବୁ ତକ ଚୁଡ଼ି ମୋର ଭାଙ୍ଗି ଦେଇଛ !'

'ଓଃ, ଏଇକଥା ! ମୁମ୍ବାଇରୁ ଆସିଲାବେଳକୁ ଆହୁରି ସୁନ୍ଦର ଚୁଡ଼ି ତୁମ ପାଇଁ ନେଇ ଆସିବି ।'

ମୋ କଥା ସରିବା ଆଗରୁ ହିଁ ସେ ପୁଣି ହସିଦେଲା ଅନ୍ୟ ଗୋଟିଏ ଭଙ୍ଗୀରେ । ମୁଁ ବାହାରକୁ ଆସିଲି । ରାସ୍ତାର ଦୁଇପଟରେ ଘାସ ଉପରେ ପଡ଼ିଥିବା କାକର ବିନ୍ଦୁକୁ ଚାହିଁ ଚାହିଁ ଆସି ଘରେ ପହଞ୍ଚିଲି ।

ଘରେ ମାଇଁ ବୋଧେ ମୋତେ ହିଁ ଅପେକ୍ଷା କରିଥିଲେ ।

'ଏତେବେଳଯାଏ କୋଉଠି ଥିଲୁ କିରେ ?'

'ନାଟ ଦେଖୁଥିଲି ।'

'କେମିତି ହେଲା ?'

'ବହୁତ ବଢ଼ିଆ ।'

ଘର ଭିତରେ ପଶି ଦେଖିଲି, ମାମୁଁ ଶୋଇ ଘୁଂଘୁଡ଼ି ମାରୁଛନ୍ତି ।

'ଯାଆ, ଗାଧୋଇ ଆ । ରାତି ଅନିଦ୍ରା ହୋଇଛୁ, ଗାଧୋଇ ପଡ଼ିଲେ ଭଲ ଲାଗିବ ।' ମାଇଁ କହିଲେ ।

କିନ୍ତୁ ଦେହଟା ଉପରେ ଏଇନା ପାଣି ଢ଼ାଳିବା ପାଇଁ ଆଦୌ ଇଛା ହେଉନଥିଲା । ତା ସ୍ପର୍ଶର ସୁଖ ଏତେଶୀଘ୍ର ପାଣିରେ ଧୋଇ ଦେବାପଇଁ ମନଟା ମାନୁନଥିଲା । ସାରା ଦେହରେ ତା ପାଟଶାଢ଼ୀ ସ୍ପର୍ଶ, ତା ଶାଳ ସ୍ପର୍ଶ - ଗୋଟାଏ ଅଲଗା ବାସ୍ନାରେ ମନ ମହକି ଯାଉଥିଲା ।

*

ଶଗଡ଼ରେ ବସି ବନ୍ଦର ଆଡ଼କୁ ଚାଲିଲି । ରାସ୍ତାରେ ମନ୍ଦିର ପାଖରେ କଲ୍ୟାଣୀ ଓ ମାନୁ ଦୁହେଁ ଛିଡ଼ା ହୋଇଥିଲେ । କଲ୍ୟାଣୀ ମୋ ହାତରେ ଗୋଟିଏ ବ୍ୟାଗ ଧରେଇ ଦେଲା । ସେଥିରେ ପାଞ୍ଚୋଟି ନଡ଼ିଆ ଓ ଠାକୁରଙ୍କ ପାଖରେ ଭୋଗ ଲାଗିଥିବା

କଦଳୀ ଫେଣାଏ ଥିଲା ।

'ପୁଣି କେବେ ଆସିବୁରେ ?'

'ଶୀଘ୍ର ଆସିବି ଏଥର ।'

ଶୀଘ୍ର ମାନେ କେବେ ସେ କଥା ମାନୁକୁ ଭଲ ଭାବେ ଜଣାଥିଲା । କିନ୍ତୁ ସେ କିଛି କହିଲା ନାହିଁ । ତା' ଆଖି ଲୁହ ଛଳଛଳ ଦିଶୁଥିଲା । ଗାଡ଼ି ଚାଲିବାରୁ ସେ ହସିବାକୁ ଚେଷ୍ଟା କଲା, କିନ୍ତୁ କେବଳ ତା ଓଠ ଦୁଇଟି ହଲିଗଲା ଯାହା !

ଗାଡ଼ି ଆଗକୁ ଗଡ଼ିଲା । ମୁଁ ଚାହିଁଲି । କଲ୍ୟାଣୀ ବୁଲିପଡ଼ି ଘରଆଡ଼କୁ ଯାଉଥିଲା । ମାନୁ କିନ୍ତୁ ସେଇଠି ସେମିତି ଛିଡ଼ା ହୋଇ ହାତ ହଲଉଥିଲା ।

ବନ୍ଦର ପାଖରେ ଓହ୍ଲେଇଲି । ପୁଣି ଥରେ ପାହାଡ଼ ଉପର ବଙ୍ଗଳାଟି ଆଖି ସାମ୍ନାକୁ ଆସିଗଲା । ମନକୁ ମନ କହିଲି, ମାନୁକୁ ନେଇ ଏଇଠିକୁ ମୁଁ ନିଶ୍ଚୟ ଆସିବି !

ବୋଟ୍‌ରେ ପାଦ ଦେଲି । ପୁଙ୍ଗା ବାଜି ଉଠିଲା ରଡ଼ି କରି, ସାରା ପରିବେଶଟା ଥରିଗଲା ପରି ମନେହେଲା । ବୋଟ୍ ଛାଡ଼ିଲା । ବନ୍ଦର ଉପରୁ ଲୋକେ ରୁମାଲ ହଲେଇ ବିଦାୟ ଜଣଉଥିଲେ । ମୋତେ ଲାଗୁଥିଲା ମାନୁ ବି ସେମାନଙ୍କ ଭିତରେ ଅଛି । ରୁମାଲ ହଲେଇ ମୋତେ ବିଦାୟ ଜଣାଉଛି । ଅଜାଣତରେ ଆଖିକୁ ଲୁହ ଆସିଗଲା ।

ବୋଟ୍ ଆଗକୁ ଆଗକୁ ଚାଲିଥିଲା । ପାହାଡ଼ ଉପର ବଙ୍ଗଳାଟି କ୍ରମଶଃ ଗୋଟିଏ ଧୂସର ବିନ୍ଦୁରେ ରୂପାନ୍ତରିତ ହୋଇଗଲା । ମୋ ଆଖିର ଲୁହ ଭିତରେ ସେଇଟା ଆହୁରି ଧୂସର ଦିଶୁଥିଲା ।

**

# ଦୁଇ

ମୁମ୍ବାଇରେ ପହଞ୍ଚିଲି । ମନଟା କିନ୍ତୁ ସଦାବେଳେ ଛଟପଟ ହେବାକୁ ଲାଗିଲା । ମନେ ମନେ ଭାବିଲି ମାମୁଁଘରେ ରହିବାଟା ଏଥର ବହୁତ କମ ହୋଇଗଲା । ଆଉ କିଛି ଦିନ ରହିଯାଇଥିଲେ ଭଲ ହୋଇଥାଆନ୍ତା । ବାରମ୍ବାର ଏଇୟା ହିଁ ଭାବୁଥିଲି । ସେଇ ଅଳ୍ପଦିନର ରହଣି ଭିତରେ ଯେଉଁ ଅନୁଭବ ମିଳିଥିଲା ତାକୁ ଇ ଜୀବନ୍ତ ରଖିବାକୁ ଚେଷ୍ଟା କରୁଥିଲି ।

ଘରେ ପହଞ୍ଚିବାପରେ ମାଆ ପ୍ରଥମେ ମାମୁଁ ମାଇଁଙ୍କ କଥା ସବୁ ପଚାରି ବୁଝିଲା । ଅବଶ୍ୟ ମାମୁଁଙ୍କ ବିଷୟରେ ସେମିତି ବେଶୀ କିଛି ଜାଣିବା ପାଇଁ ନଥିଲା । କାରଣ ତାଙ୍କ ଜୀବନ ଏକ ଧରାବନ୍ଧା ନିୟମରେ ଚାଲିଥିଲା । ଯେମିତି କାଲି ଥିଲା, ଆଜି ବି ସେମିତି । ବିଶେଷ କିଛି ପରିବର୍ତ୍ତନ ନାହିଁ । ଆଜି ଯେମିତି ଚାଲିଛି, ଆସନ୍ତାକାଲି ମଧ୍ୟ ସେମିତି ଚାଲିବ । ତାଙ୍କ ବିଷୟରେ ଆଉ ପ୍ରଶ୍ନ କ'ଣ ?

କିନ୍ତୁ ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା - ମାଆ କଲ୍ୟାଣୀ ବିଷୟରେ କିଛି ପଚାରିଲା ନାହିଁ । ମୋ ହାତରେ ମାଆ ପାଇଁ କଲ୍ୟାଣୀ ନଡ଼ିଆ କଦଳୀ ପଠେଇଥିଲା । ସେ ବ୍ୟାଗଟି ମୁଁ ମାଆ ହାତରେ ଦେଇ କହିଥିଲି, 'ଏ ଉପହାର ତୋ ପିଲାଦିନର ସାଙ୍ଗ ପଠେଇଛି ।'

'କିଏ ମ ?'

'କଲ୍ୟାଣୀ–' ମୁଁ ମାଆ ଆଖକୁ ଚାହିଁ କହିଲି । ତା'ର କିନ୍ତୁ କୌଣସି ପ୍ରକାରର ପ୍ରତିକ୍ରିୟା ନଥିଲା ।

'ଓଃ !' ବାସ ଏତିକି କହି ବ୍ୟାଗଟାକୁ ଗୋଟିଏ କଡ଼କୁ ରଖିଦେଲା ।

ତାପରେ କେବେ ବି ସେ ନିଜଆଡୁ କଲ୍ୟାଣୀ ବିଷୟରେ ପଚରା ଉଚରା କଲାନାହିଁ । ତା'ର ଏମିତି ପ୍ରତିକ୍ରିୟା-ଶୂନ୍ୟ ଭାବ ମୋତେ ଆଦୌ ଭଲ ଲାଗୁ ନଥିଲା । ମାଆ ତ ସହଜେ ଗପୁଡ଼ି । ଏବେ କିନ୍ତୁ ତାର ସେ ସ୍ୱଭାବ ଏତେ ବଢ଼ି ଯାଇଥିଲା ଯେ ଅଯଥା କଥା ବି ଗପି ଚାଲୁଥିଲା । କିନ୍ତୁ କଲ୍ୟାଣୀ ବିଷୟରେ କିଛି ବି

ପଚାରିଲାନି କାହିଁକି ? ମନ୍ଦିର ଭିତରେ ଦେଖୁ ଦେଖୁ କଲ୍ୟାଣୀ ମୋତେ ମାଆ କଥା ପଚାରିଥିଲା । ବାରମ୍ବାର ମାଆ ବିଷୟରେ ଗପୁଥିଲା କଲ୍ୟାଣୀ । ବାହାଘର ବେଳେ ସେ କେମିତି ମାଆ ପଛେ ପଛେ ରହିଥିଲା, ସେ କଥା କହିଲା ବେଳେ ତା ମୁହଁରୁ ଗୋଟାଏ ପ୍ରକାରର ଅଭିମାନ ସ୍ପଷ୍ଟ ଦିଶୁଥିଲା । ଅଜା ତାକୁ ବାହାଘରରେ ଯେଉଁ ପାଟଶାଢ଼ୀ ଦେଇଥିଲେ ତାକୁ ଏବେ ସୁଦ୍ଧା ସେ ସାଇତି ରଖିଛି । କେତେ ପ୍ରଶଂସା କରୁଥିଲା ସେ ଶାଢ଼ୀର ।

ମାଆର କିନ୍ତୁ କଲ୍ୟାଣୀ ବିଷୟରେ ଜାଣିବା ପାଇଁ କୌଣସି ପ୍ରକାର ଆଗ୍ରହ ନାହିଁ । କାଲି ସକାଳେ କଲ୍ୟାଣୀ ମୋ ଶାଶୁ ହେବ ବୋଲି ନୁହେଁ ଯଦିଓ, ତଥାପି ବି ମାଆର ତା' ପ୍ରତି ଏ ପ୍ରକାର ବିତୃଷ୍ଣା ଭାବ ମୁଁ ଆଦୌ ସହି ପାରୁନଥିଲି । ମାଇଁଙ୍କର କଲ୍ୟାଣୀ ପ୍ରତି ବିତୃଷ୍ଣା ରହିବାଟା ସ୍ୱାଭାବିକ । ସେ କଥା ମୁଁ ବୁଝି ପାରୁଥିଲି । ମାମୁଁଙ୍କର କଲ୍ୟାଣୀ ପାଖକୁ ଯିବାଟା ମାଇଁ ସହ୍ୟ କରିବା କ'ଣ ସମ୍ଭବ ? କିନ୍ତୁ ମାଆର କ'ଣ ସେ କରିଛି ? ବୋଧହୁଏ ମାମୁଁଙ୍କର ତା'ପ୍ରତି ଥିବା ଆକର୍ଷଣକୁ ସେ ବି ସ୍ୱୀକାର କରି ପାରିନି । ସେଥିପାଇଁ ତା'ର ଏ ରାଗ । କିନ୍ତୁ ଏଥିରେ ଦୋଷ କାହାର ? ମାମୁଁଙ୍କର ନାଁ କଲ୍ୟାଣୀର ? ବରଂ ମାମୁଁ ତାଙ୍କ ଜୀବନରେ ଯଦି ସୁଖର ମୁହୂର୍ତ୍ତ କିଛି ପାଇଥାଆନ୍ତି ତେବେ ସେ କେବଳ କଲ୍ୟାଣୀ ସହିତ ବିତଉଥିବା ସମୟ ଭିତରେ । କଲ୍ୟାଣୀ ଅଛି ବୋଲି ମାମୁଁ ସୁଖରେ ଅଛନ୍ତି । ମନ ଶାନ୍ତି କରିବା ପାଇଁ ମାମୁଁ ସମୟ ଅସମୟରେ ତା' ପାଖକୁ ଯାଆନ୍ତି । ଯାର ଅର୍ଥ ମାମୁଁଙ୍କ ଜୀବନରେ କିଛି ପରିମାଣରେ ସୁଖ କେବଳ କଲ୍ୟାଣୀ ହିଁ ଦେଇ ପାରିଛି । ମାମୁଁଙ୍କ ଛଡ଼ା ତା'ର ଅନ୍ୟ କାହା ସହିତ କୌଣସି ସଂପର୍କ ନାହିଁ । ସମସ୍ତଙ୍କ ପାଇଁ ସେ କେବଳ ଏକ ଦେବଦାସୀ । ପୁରୁଷଙ୍କୁ ଆକୃଷ୍ଟ କରିବାରେ ମୋହିନୀ । ଅନ୍ୟର ସଂସାର ଭାଙ୍ଗି ପୁରୁଷମାନଙ୍କୁ ଅବାଟକୁ ଟାଣି ନେଉଥିବା ଖରାପ ସ୍ତ୍ରୀ ଲୋକର ମୋହର ବସିଛି ତାଙ୍କ ପାଖରେ । ଚାରିପାଦ ତାଙ୍କଠାରୁ ଦୂରେଇ ହୋଇ ରହିବା ହିଁ ଶ୍ରେୟସ୍କର । ଦୂରେଇ ହୋଇ ରହିବାର ଅର୍ଥ କ'ଣ ? ପାଖକୁ ଗଲେ ଟାଣିହୋଇ ଯିବାର ଭୟ ?

ସମସ୍ତଙ୍କ ଦୃଷ୍ଟି ଆଗରେ ପରଦା ପଡ଼ି ରହିଛି । ସେଇ ଗୋଟିଏ ଦିଗରେ ହିଁ ସମସ୍ତଙ୍କର ଚିନ୍ତାର ଧାରା । ଜଣେ ଯାହା କରିବ ତାକୁ ଦେଖି ଅନ୍ୟ ଜଣେ ବି ସେଇୟା କରିବ । ତାପରେ ତୃତୀୟ ଜଣକ ବି ସେଇ ବାଟରେ ଯିବ । ସେମିତି ଚିନ୍ତା କରିବ । ଏମିତି ଜଣ ଜଣ ହୋଇ ସମସ୍ତେ ସେଇ ଗୋଟିଏ ଯାଗାରେ ଅଟକି

ଯିବେ । ଏଇ ହେଲା ଦୁନିଆ । ଟିକେ ଭିନ୍ନ ଭିନ୍ନ ଦୃଷ୍ଟିକୋଣ ନେଇ କିଛି ଚିନ୍ତା କରିବା ବା କିଛି କାମ କରିବା– କାହା ପାଖରେ ସେ କଥା ନାହିଁ ।

ମୁଁ ମନେ ମନେ ତୁଳନା କରୁଥିଲି । ମାମୁଁଙ୍କୁ ନିଜ ଆଡ଼କୁ ଆକର୍ଷଣ କରୁଥିବା କଲ୍ୟାଣୀ ଅପରାଧି କି ମାମୁଁଙ୍କୁ ନିଜଆଡ଼କୁ ଆକର୍ଷଣ କରିବାରେ ଅସମର୍ଥ ଥିବା ମାଇଁ ଅପରାଧି ! ସମସ୍ତଙ୍କ ଦୃଷ୍ଟିରେ କଲ୍ୟାଣୀ ଦୋଷୀ । ବହୁତ ଖରାପ ସ୍ତ୍ରୀ ଲୋକଟିଏ ! ଆଉ ମାଇଁ ଖୁବ୍ ଭଲ ! କାହିଁକି ନା କଲ୍ୟାଣୀ ଦେବଦାସୀ ଆଉ ମାଇଁ ହେଲେ ମାମୁଁଙ୍କର ବିବାହିତା ପତ୍ନୀ !

କିନ୍ତୁ ନିର୍ମଳ ମନରେ ବିଚାର କରି ଦେଖିଲେ ହୁଏତ କଲ୍ୟାଣୀ ଉପରେ ହିଁ ସମସ୍ତଙ୍କର ସହାନୁଭୂତି ଆପେ ଆପେ ଆସନ୍ତା । ଆମ ସମାଜରେ ନିଜ ସୁଖ ପାଇଁ ଠାକୁରଙ୍କ ନାଁ ନେଇ ନିର୍ମାଣ କରାଯାଇଥିଲା ଏ ଦେବଦାସୀ ସଂସ୍ଥା । ସେଥିରେ ବଳି ପଡୁଥିଲେ କଲ୍ୟାଣୀ ପରି ନିରୀହା ସ୍ତ୍ରୀ ଲୋକମାନେ । ମାଆ ଦେବଦାସୀ ହେଲେ ଝିଅ ବି ଠାକୁରଙ୍କ ପାଖରେ ଦେବଦାସୀ ହୋଇ ରହିବ । ବାହା ହେବାର ସ୍ୱାଧୀନତା ତା'ର ନାହିଁ । ସ୍ୱାଧୀନତା ନୁହଁ ତ ବିବାହର ଅଧିକାର ତାର ନାହିଁ । ସମାଜର ଧନୀମାନୀ ବ୍ୟକ୍ତିମାନେ ଯେଉଁମାନେ କି ତା'ର ଭରଣପୋଷଣର ଦାୟିତ୍ୱ ନେବେ କେବଳ ସେଇ ହିଁ ଦେବଦାସୀର ପ୍ରୀତିଭାଜନ ହୋଇ ରହିବେ । ଦେବଦାସୀର ଗର୍ଭରେ ସେ ବ୍ୟକ୍ତିର ସନ୍ତାନ ରହିଲେ ସୁଦ୍ଧା ତାର ପିତୃତ୍ୱକୁ ଦାବୀ କରିବାର ଅଧିକାର ସେ ସନ୍ତାନର ନାହିଁ । ସେ କେବଳ ହେବ ଦେବଦାସୀର ସନ୍ତାନ । ସେଇ ତା'ର ପରିଚୟ ହେବ । ସନ୍ତାନଟି ଯଦି କନ୍ୟା ହୁଏ ତେବେ ସେ ଦେବଦାସୀ ହେବା ଅନିବାର୍ଯ୍ୟ । ବିବାହ ପାଇଁ ତା'ର ଅଧିକାର ନାହିଁ କିମ୍ବା ଅନୁମତି ମଧ ନାହିଁ । କେବଳ ଠାକୁରଙ୍କ ସେବା କରିବା ତା ଭାଗ୍ୟରେ ଲେଖା ହୋଇଥାଏ । ସେଇ ତା'ର ଧର୍ମ । ସେଇ ସେବାର ଆଢୁଆଳରେ ସେ ବି ଅପେକ୍ଷା କରେ କିଏ ଆସିବ ତା'ର ଭରଣ ପୋଷଣର ଦାୟିତ୍ୱ ନେଇ ତାକୁ ନିଜର କର୍ତ୍ତୃତ୍ୱ ଭିତରକୁ ନେବାପାଇଁ ! କଲ୍ୟାଣୀ ତ ଠାକୁର ବିଶ୍ୱାସରେ ସଂପୂର୍ଣ୍ଣ ଅନ୍ଧୁଣୀ ହୋଇଯାଇଥିଲା । କିଛି ତାକୁ ଆଉ ଦିଶୁନଥିଲା । ନିଜ ଜୀବନଟାକୁ ସେ ଯେମିତି ଭାବରେ କାଟି ଦେଇଛି ତା' ଝିଅ ପାଇଁ ବି ସେମିତି ଚିତ୍ର ଗୋଟିଏ କଳ୍ପନାରେ ଆଙ୍କି ରଖିଥିଲା । ମହାନନ୍ଦାର ବିବାହ ନ ହେବାପାଇଁ ତା'ର ସେ କି ବିତଣ୍ଡା ଯୁକ୍ତି ! ତା'ର ବିବାହ ପାଇଁ କଲ୍ୟାଣୀ ଆଦୌ ରାଜି ନୁହଁ । ବାହାହେଲେ ତା'ର

ପାପ ହେବ । ଅପରାଧ ହେବ । ତା'ର ଫଳ ସମସ୍ତଙ୍କ ପାଇଁ ଅମଙ୍ଗଳ ହିଁ ଆଣିବ । ତା'ର ଦୃଢ଼ ବିଶ୍ୱାସ ଏଥିପାଇଁ ।

ଏ ସବୁ ବିଚାର କଲେ କଲ୍ୟାଣୀ ପ୍ରତି ସମବେଦନା ଆସିବା କଥା । କାରଣ ତା କଥା ଚିନ୍ତା କଲେ ମନରେ ଦୁଃଖ ହିଁ ଆସିବ । କିନ୍ତୁ କିଏ କାହିଁକି ତା କଥା ଏତେ ଗହୀରେଇ ଭାବିବ ? କାହାର ସେ ବିଷୟରେ କିଛି ଭାବନା ନାହିଁ । କିଛି ପ୍ରତିକ୍ରିୟା ନାହିଁ । କାରଣ ତା ଜୀବନର ରଙ୍ଗରୂପ ସମସ୍ତଙ୍କ ପାଇଁ ଅତି ସହଜ ଓ ସ୍ୱାଭାବିକ ଭାବେ ସ୍ୱୀକୃତି ପାଇସାରିଛି । ପରମ୍ପରାଗତ ସମାଜରେ ହଳିଲା ପାଣିକୁ ଗୋଡ଼ ବଢ଼େଇବ କିଏ ? କାହିଁକି ?

ଜାଣି ଜାଣି ଥରେ ମୁଁ ମାଆକୁ ପଚାରିଲି, 'କଲ୍ୟାଣୀ ତୋ କଥା ବହୁତ କହୁଥିଲା । ସେ ତୋର ପିଲାଦିନର ସାଙ୍ଗ । ତୁମ ଛୋଟ ବେଳର କେତେ କଥା ସବୁ ମୋ ଆଗରେ ଗପୁଥିଲା ।'

ମାଆ ମୁହଁରୁ ତଥାପି ବି ଶବ୍ଦଟିଏ ସୁଦ୍ଧା ବାହାରିଲା ନାହିଁ ।

ବରଂ କଥା ବୁଲେଇ ଲଖୋବା କଥା କହିଲା । ଏ ବୟସରେ ଗୋଟିଏ ସ୍ତ୍ରୀ ଲୋକ ପାଖକୁ ଯାଉଛି । ଅନ୍ୟର ପିଲାମାନଙ୍କୁ ନିଜର ବୋଲି କହୁଛି । ସ୍ନେହ ଆଦର କରୁଛି । ତାଙ୍କରି ପଛରେ ସବୁବେଳେ ପଡ଼ିଛି । ଏସବୁ କହି ଜୋର ଜୋରରେ ହସିଲା ।

'ମାଆ, କଲ୍ୟାଣୀ ତୋରି ବୟସର ନାଁ ?'

ମୁଁ ଜାଣି ଜାଣି ଏ ପ୍ରଶ୍ନ କଲି ତା'ରି କଥା ପକେଇବା ପାଇଁ । ମାଆ ମୁହଁଟାକୁ କେମିତି ଗୋଟାଏ କରି ବହୁତ ବାଧରେ ଯେମିତି କହିଲା, 'ହଁ, ମୋ ଠାରୁ ବର୍ଷେ ଦୁଇ ବର୍ଷ ବଡ଼ ହେବ ।' ଫୋପାଡ଼ିଲା ପରି କହିଲା ।

'କିନ୍ତୁ ସେ ତ ମୋତେ ଜଣା ପଡୁନି ସେମିତି ।'

'କେମିତି ଦିଶିବ ! ହାତ ଆଙ୍ଗୁଠିରେ ସତର ଲୋକଙ୍କୁ ନଚଉଛି ଯେ !'

ତା'ର ଗୋଟିଏ ଦିବ୍ୟ ସୁନ୍ଦର ଝିଅ ଅଛି । ମୁଁ ସେ ଝିଅକୁ ବାହାହୋଇ ତୋ ବୋହୂକରି ତାକୁ ଆଣିବି ଏ ଘରକୁ । ଭାବିଲି ହସି ହସି ମାଆକୁ ଏ କଥା କହିଦେବି । କିନ୍ତୁ ସାହସ ହେଲାନାହିଁ । ଶୁଣୁଶୁଣୁ ସେ ଯେ କି ପ୍ରକାର ତାଣ୍ଡବ କରିବ ଏଇନା ସେ ବିଷୟରେ ସଂପୂର୍ଣ୍ଣ ଧାରଣା ମୋର ଥିଲା ।

ପୁଣି ଭାବିଲି, ଏବେ ତାକୁ ସବୁ କଥା କହିବାର ଅର୍ଥ କିଛି ନାହିଁ । ଏବେଠାରୁ

ତା' ମୁଣ୍ଡଟାକୁ ଓଳଜିଆ କରିବି କାହିଁକି ? ତା' ଆଖିରୁ ନିଦ ହଜିଯିବ । ଆସ୍ତେ ଆସ୍ତେ ତାକୁ ସବୁକଥା ବଳେ ବଳେ ଜଣାପଡ଼ି ଯିବନି ଯେ ! ସେତେବେଳେ ରାଗରେ ନିଆଁ ହୋଇଯିବ ? ହଉ ! ତା'ର ସେ ପୁରୁଣାକାଳିଆ କଥା ଆମର ଏ ଆଧୁନିକ ଚିନ୍ତା ସହ ମିଶିପାରିବ କି ? ଏମିତି ସମାନ୍ତର ଭାବେ ଦୁହିଁଙ୍କ କଥା ଚାଲିବ । ଅନ୍ୟ ଉପାୟ ବି ନାହିଁ । ବର୍ଷେ ଦୁଇବର୍ଷ ଯାଏ ମୋର କି ମାନୁର ମୁହଁ ସୁଦ୍ଧା ଦେଖିବାକୁ ଇଚ୍ଛା କରିବନି । ତା'ପରେ ? ରାଗ ଶାନ୍ତ ହେଲେ ଆପେ ଆପେ ଆମ ପାଖକୁ ଆସିବ । ପ୍ରଥମେ ତ ଚାରିଜଣ ଚାରି ପ୍ରକାରର କଥା କହିବେ। କିଛିଦିନ ପରେ ଲୋକେ ସବୁ ଆସ୍ତେ ଆସ୍ତେ ଭୁଲିଯିବେ । ତାଙ୍କ ପାଖରେ ନୂଆ କଥା କିଛି ପହଞ୍ଚି ଯାଇଥିବା ଚର୍ଚ୍ଚା କରିବା ପାଇଁ । ମାଆ ବି ଲୋକଙ୍କ ପରି ସବୁ ଭୁଲିଯିବ । ନିଜେ ନିଜେ ମାନୁକୁ କୋଳରେ ପୁରେଇବ । ମାନୁ ବି ତା' ନିଜ ଗୁଣରେ ମାଆକୁ ନିଜର କରିନେବ ଖୁବ୍ ଅଳ୍ପ ଦିନ ଭିତରେ । ଆଉ ଯଦି ଏମିତି କିଛି ନ ହୁଏ, ମାଆର ରାଗ ସେମିତି ରହେ, ତେବେ ବି କିଛି ଚିନ୍ତା ନାହିଁ । ଆମେ ଦୁହେଁ ହିଁ ରହିବୁ । ମୁଁ ଆଉ ମାନୁ !

କଲେଜରେ ପିଲାମାନଙ୍କର ମରାଠୀ କ୍ଲାସ ନେଲା ବେଳକୁ ମନଟା ରହି ରହି ଅନ୍ୟମନସ୍କ ହୋଇ ଯାଉଥିଲା । ପ୍ରଥମ ଧାଡ଼ିରେ ବସିଥିବା ଝିଅମାନଙ୍କୁ ଚାହିଁଲେ ମାନୁର ମୁହଁ ଆଖିରେ ନାଚୁଥିଲା । ସଫା ଧଳା ଶାଢ଼ୀ ପିନ୍ଧି ମୁଣ୍ଡ ସିଧା କରି ମାନୁ ତା ଲେକ୍‌ଚର ଶୁଣିଲା ଭଳି ତାକୁ ଲାଗୁଥିଲା । ତାର ଯଦି ଆପତ୍ତି ନଥାଏ ତେବେ ତାକୁ ପଢ଼େଇବାରେ ବି ସେ କମ୍ କରିବନି । ତା' କ୍ଲାସରେ ମାନୁ ବସିଲେ ପାଠ ପଢ଼େଇବାର ଆଗ୍ରହ ତା'ର କେତେ ବଢ଼ିଯିବ !

ମନର ଅସ୍ଥିରତା ବହୁତ ପରିମାଣରେ କମ ହୋଇ ଯାଇଥିଲା । ପ୍ରଥମେ କଲେଜକୁ ଆସୁଥିବା ସୁନ୍ଦର ସୁନ୍ଦର ଝିଅମାନଙ୍କୁ ଦେଖି ତାଙ୍କର ସେଇ ସୁନ୍ଦର ମୁହଁକୁ ମନ ଭିତରେ ବାନ୍ଧି ରଖିଦେବା ପାଇଁ ଇଚ୍ଛା ହେଉଥିଲା । ସେଥିରେ କେମିତି ଗୋଟାଏ ଆନନ୍ଦ ମିଳୁଥିଲା । ଏବେ କିନ୍ତୁ ଆଉ ସେମିତି କିଛି ନଥିଲା । ଖୋଲା ଆଖିରେ ବି ଥିଲା ମାନୁ – ଆଉ– ଆଖି ବନ୍ଦ କଲେ ବି ଥିଲା ମାନୁ । ମାନୁର ସେଇ ହସ ହସ ମୁହଁ । ନିଜ ଆଖିର ଡ଼ୋଳା ବି ଆଉ ଦିଶୁନଥିଲା । ବରଂ ସେ ଡ଼ୋଳା ଭିତରେ ଅହରହ ମାନୁର ପ୍ରତିବିମ୍ବ ହିଁ ଦିଶୁଥିଲା । ମୋ ଭିତରେ ତାକୁ ବନ୍ଦୀ କରିବା ପାଇଁ ବାରମ୍ବାର ଆଖି ବନ୍ଦ କରିବାକୁ ଇଚ୍ଛା ହେଉଥିଲା । ସେମିତି ଆଖି ବନ୍ଦ କରି ବି ରାତି ମୋର ଉଜାଗରରେ କଟି ଯାଉଥିଲା ।

ଦିନେ ସକାଳେ ମାଆ କହିଲା, 'କେତେ ସ୍ୱପ୍ନ ଦେଖୁଛୁ କିରେ ଆଜିକାଲି ? କେଉଁଠି କାହା ପ୍ରେମରେ ପଡ଼ିଲୁଣି ନାଁ କ'ଣ ? ଖୋଲି କରି କହୁନୁ, ତୋର ବାହାଘର କରିଦେଲେ ମୁଁ ବି ମୁକ୍ତ ହୋଇଯିବି । ବହୁତ ଥକି ଗଲିଣି ।'

'କାହିଁକି ଏମିତି କହୁଛୁ ? କ'ଣ ହେଲା କି ?'

'ଆରେ, ରାତିରେ ନିଦରେ ବାଉଳି ହୋଇ ହସୁଛୁ । କ'ଣ ସବୁ କହୁଛୁ । ମୁଁ କିଛି ବୁଝି ପାରୁନି ।'

ମୁହୂର୍ତ୍ତକ ପାଇଁ ଭାବିଲି ମାଆ ଆଗରେ ସତକଥା ସବୁ ଖୋଲି କହିଦେବି । ସ୍ୱପ୍ନରେ ମାନୁ ଆସୁଛି । ମୁଁ ତାକୁ ହିଁ ବାହାହେବି । କିନ୍ତୁ ମୁହଁ ଖୋଲିବାର ସାହସ କରିପାରିଲିନି ।

କଲେଜକୁ ଅନେକ ଝିଅ, ଶାଢ଼ୀ ପିନ୍ଧି ଆସୁଥିଲେ । ବେଶ ସାଜିବୁଜି ହୋଇଥିବା ସୁନ୍ଦର ସୁନ୍ଦର ଝିଅମାନେ ବି ଯିବା ଆସିବା ବେଳେ ରାସ୍ତାରେ ସାମ୍ନାରେ ପଡ଼ିଯାଉଥିଲେ । ତାଙ୍କ ଉପରେ ଦୃଷ୍ଟି ପଡ଼ିବା କ୍ଷଣି ମନ ହେଉଥିଲା ମାନୁକୁ ଏଇଠିକୁ ନେଇ ଆସନ୍ତି । ମଫସଲି ଢଙ୍ଗରେ ପିନ୍ଧୁଥିବା ସେ ନଅଗଜ ଶାଢ଼ୀରୁ ବାହାର କରି ତାକୁ ଏ ସହରି ଗତିରେ ଶାଢ଼ୀ ପିନ୍ଧିବା ଶିଖେଇ ଦିଅନ୍ତି । ସେ ଆହୁରି ସୁନ୍ଦର ଦିଶିବ ଏ ପ୍ରକାର ବେଶବାସରେ । ଖୁବ୍ ମାନିବ ଏ ଛଅଗଜ ଶାଢ଼ୀ ପିନ୍ଧି ସେ ଆଗକୁ ଆସିଲେ ।

କୌଣସି ଲୁଗା ଦୋକାନ ବାଟରେ ପଡ଼ିଗଲେ ଶୋ କେସ୍‌ରେ ସଜା ହୋଇ ରହିଥିବା ଶାଢ଼ୀ ସବୁକୁ ଦେଖି ମନେ ମନେ ସେଇ ଶାଢ଼ୀ ମୁଁ ମାନୁକୁ ପିନ୍ଧେଇ ଦେଖିନିଏ ମୋ କଳ୍ପନା ଚକ୍ଷୁରେ । ମନ ବି ଉତ୍‌ଫୁଲ୍ଲ ବିକଳ ହୋଇଯାଏ ମାନୁକୁ ହାତ ପାହାନ୍ତାରେ ପାଇବା ପାଇଁ ।

ନାଁ ଆଉ ନୁହଁ । ବାହାଘର ନ ହେବା ପର୍ଯ୍ୟନ୍ତ ଆଉ ଏ ମନକୁ ଶାନ୍ତି ମିଳିବନି ।

ମନେ ମନେ ପ୍ରସ୍ତୁତିରେ ଲାଗିଗଲି ।

ସୁନ୍ଦର ଶାଢ଼ୀ ଦେଖିଲେ କିଣି ଆଣି ଘରେ ମୋ ଲୁଗାପଟା ଭିତରେ ଲୁଚେଇ ରଖୁଥିଲି । ଟ୍ରଙ୍କରେ ଚାବି ଦେଇ ରଖୁଥିଲି । ଯଦି କେତେବେଳେ ଟ୍ରଙ୍କ ଖୋଲିବା ଦରକାର ପଡୁଥିଲା, ଆଗେ ସେ ଘର ବନ୍ଦକରି ଭିତର କିଳିଣି ଦେଇସାରି ତା'ପରେ ଯାଇ ଟ୍ରଙ୍କ ଖୋଲୁଥିଲି । ସେଇଥିରେ ପ୍ରଥମ ଦିନ ଆଣିଥିବା ଜୁଇଫୁଲର ଶୁଖିଲା ହାରଟି ବି ଥିଲା । ଯାତ୍ରା ଦିନ ରାତିରେ ମାନୁ ମୋ ଗଳାରେ ଅବୋଲି ଫୁଲର ଯେଉଁ

ହାରଟି ପିନ୍ଧେଇଥିଲା ସେଇଟା ବି ଥିଲା ସେଥିରେ । ଅବଶ୍ୟ ହାରଟା ଶୁଖିଯାଇଥିଲା ଏବେ । ତଥାପି ବି ସେ ଶୁଖିଲା ହାରଟିକୁ ଗାଲ ଉପରେ ରଖି ହଜିଯିବାରେ ବହୁତ ଆନନ୍ଦ ମିଳୁଥିଲା । ମଝିରେ ମଝିରେ ଛୋଟ ଛୋଟ ଲେଡ଼ିଜ ରୁମାଲ କେତେଟା ବି ଆଣି ରଖିଥିଲି ସେଥିରେ । କାନ ଝୁମୁକା ହଳେ, ଭିନ୍ନ ଭିନ୍ନ ରଙ୍ଗର ଚୁଡ଼ି ସବୁ ବି ଆଣି ରଖିଥିଲି । ମାନୁ ପାଇଁ ସାଇତି ରଖିଥିବା ଜିନିଷର ସେ ଟ୍ରଙ୍କଟି ଥିଲା ଭଣ୍ଡାର ଘର । ତା'ର ଚାବି ଥିଲା କେବଳ ମୋ ପାଖରେ ।

ତା ସହିତ ମୁମ୍ବାଇ କଲେଜ ଛାଡ଼ି ନାଗପୁର କଲେଜରେ ଜଏନ କରିବାର ଉଦ୍ୟମ ବି ଚାଲିଥିଲା । ନାଗପୁରରେ ମୋ ପାଇଁ ସେମିତି କିଛି ବିଶେଷ ଆକର୍ଷଣ ଥିଲା, ସେ କଥା ନୁହେଁ । ପ୍ରକୃତ କଥା ହେଲା ମୋତେ ଓ ମାନୁକୁ ନାଗପୁରରେ କେହି ଚିହ୍ନିବେନି । କାରଣ ନାଗପୁର ଆମପାଇଁ ସଂପୂର୍ଣ୍ଣ ଅପରିଚିତ ନୂଆ ଯାଗାଟିଏ ଥିଲା । ସେତିକି ହିଁ ଆମପାଇଁ ବଡ଼କଥା ଥିଲା ସେତେବେଳେ । ସେଇଠି ମାନୁ ସହିତ ସଂସାର କଲେ ଦେବଦାସୀର ଝିଅକୁ ବାହା ହୋଇଛି ବୋଲି ଆଙ୍ଗୁଠି ଦେଖେଇ କହିବା ପାଇଁ ଲୋକ କେହି ନଥିବେ ସେଠି । ତା'ଛଡ଼ା ଘରପାଖରୁ ଦୂରକୁ ଯାଇ ରହିବାର ନିଷ୍ପତ୍ତି ମୋର ଦୃଢ଼ ଥିଲା । ମୁଁ ଭଲଭାବରେ ଜାଣିଥିଲି ଯେ ମାନୁକୁ ବାହା ହେବା ପରେ ଘରେ ରହିବା ଆଉ ମୋ ପାଇଁ ସମ୍ଭବ ହେବ ନାହିଁ । ଯଦିବି କିଛି ଚମତ୍କାର ଘଟି ମାଆ ମାନୁକୁ ଘରେ ରହିବାକୁ ସମ୍ମତି ଦେଇଦିଏ ତଥାପି ବି କୌଣସି ନାଁ କୌଣସି ଆଳରେ ସେ ମାନୁକୁ ହଇରାଣ କରିବ – ଏ ବିଷୟରେ ମୁଁ ନିଃସନ୍ଦେହ ଥିଲି । ତାଛଡ଼ା ଅଲଗା ହୋଇ ଦୂରରେ ରହିଲେ ଉଭୟ ପକ୍ଷ ପାଇଁ ଭଲ ହେବ । ପରେ ସମ୍ବନ୍ଧ ସୁଧୁରିଗଲେ ତ ବହୁତ ଭଲ ହେବ । ସେ ଅଲଗା କଥା । ପ୍ରଥମରୁ କିନ୍ତୁ ସମସ୍ତଙ୍କ କଥା ବାଦ ଦେଇ ନିଜର ଯେମିତି ସୁବିଧା ହେବ ସେଇ ହିସାବରେ ବ୍ୟବସ୍ଥା କରିବା ଠିକ । ସେଇଟା ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୋଲି ମୁଁ ଭାବୁଥିଲି ।

ମୋ ଭାଗ୍ୟ ବୋଧହୁଏ ତେଜ ଥିଲା । ଏ ସୌଭାଗ୍ୟ, ମୋର କି ମାନୁର ଯାହାର ବି ହେଉ କିନ୍ତୁ ଆସି ପହଞ୍ଚି ଯାଇଥିଲା । ନାଗପୁର କଲେଜରେ ଅଧିକ ବେତନ ସହ ମୋର ଚାକିରୀ ହୋଇ ଯାଇଥିଲା । କ୍ରିସମାସ ଛୁଟିପରେ ଯାଇ ଯୋଗଦେବାର ନିର୍ଦ୍ଦେଶ ଥିଲା । ଏ କଥା ମାନୁକୁ କହିଥିଲେ ସେ ହୁଏତ କହି ଥାଆନ୍ତା, ଏମିତି ଶୂନ୍ୟରେ କିଛି ହୁଏ ନାହିଁ । ମୋ ପୂଣ୍ୟ ବଳରେ ହିଁ ଏମିତି ହୋଇଛି । ମଧଧାନ ଦେଇ ଆଜିଯାଏ ମୁଁ ଠାକୁରଙ୍କ ସେବା କରି ଆସିଚି ଯେ ।

କ୍ରିସ୍‌ମାସ ଛୁଟି ଆଗରୁ ମୁମ୍ବାଇ କଲେଜରୁ ମୁକ୍ତ ହୋଇଗଲି ଏବଂ ପରବର୍ତ୍ତୀ ଯୋଜନାରେ ଲାଗିପଡ଼ିଲି । ଐତିହାସିକ କାଳରେ ସମୟ ଅସମୟରେ ଗୁପ୍ତ ପଥରେ ଯାଇ ଗଡ଼ ଜୟ କଲାପରି ମୁଁ ଭିତରେ ଭିତରେ ବାହାଘରର ସବୁ ବନ୍ଦୋବସ୍ତ କରୁଥିଲି । ମାମୁଁ ଘରକୁ ଯିବି । ମାନୁକୁ ସାଥିରେ ନେଇ ମୁମ୍ବାଇ ଆସିବି ବୋଟ୍‌ରେ । ମୁମ୍ବାଇରେ କେଉଁଠି ଗୋଟିଏ ଘର ଭଡ଼ା ନେଇ ଦୁଇଦିନ ରହିବୁ । ସେଇଠି ଅଳ୍ପ କେତେଜଣଙ୍କ ଉପସ୍ଥିତିରେ ଆମ ବାହାଘର ହେବ । ତା' ପରେ ଦୁହେଁ ଯାଇ ନାଗପୁରରେ ସଂସାର ଆରମ୍ଭ କରିବୁ । ନାଗପୁରରୁ ଘରକୁ ଚିଠି ଲେଖି ଜଣେଇଦେବୁ – ଆମେ ବାହା ହୋଇଯାଇଛୁ । ତା' ପରେ ଯେଉଁ ପ୍ରତିକ୍ରିୟା ହେବ ତା'ର ସ୍ୱରୂପ କେବଳ ଚିଠିରୁ ହିଁ ଦେଖିବାକୁ ମିଳିବ । ପ୍ରତ୍ୟକ୍ଷରେ ନୁହେଁ ।

ସବୁ ଠିକଠାକ କରିସାରିବା ପରେ ମୁଁ ମାମୁଁ ଘରକୁ ବାହାରିଲି । ଦୀପାବଳୀ ଛୁଟିରେ ମାମୁଁ ଘରକୁ ତ ଯାଇଥିଲି । ଏଇମାତ୍ର ଦେଢ଼ମାସ ତଳେ ହିଁ ସେଠାରୁ ଆସିଛି । ପୁଣି ଥରେ ମାମୁଁଘରକୁ ଯିବା କଥା ଶୁଣି ମାଆର ସନ୍ଦେହ ହେଲା କି କ'ଣ କେଜାଣି ? ତା'ର ସନ୍ଦେହ ହେଉ କି ନ ହେଉ ମୋ ମନର ଚୋର ମୋତେ ଡ଼ରଉଥିଲା । ମାଆ କହିଲା, 'ପୁଣି କାହିଁକି ମାମୁଁ ଘରକୁ ଯିବୁ ? ଏବେ ଫେରା ଆସିଛୁ ।'

'କାହିଁକି ? ଗଲେ କ'ଣ ଅସୁବିଧା ଅଛି କି ?'

'ନାଇଁ, ଏବେ ତ ଆସିଛୁ । ଆଉ କିଛି ଦିନ ଯାଉ ଯିବୁ ।'

'ମୋର ଏବେ ଛୁଟି ଅଛି ବୋଲି ମୁଁ ଯାଉଛି । ଥରେ ଯାଇ ନାଗପୁରରେ ପହଞ୍ଚିଗଲେ ଆଉ ମାମୁଁ ଘରକୁ ଯିବାପାଇଁ ସୁବିଧା ହେବନାହିଁ ।'

ମୁଁ କହିଚାଲିଥିଲି । ମାଆ କିନ୍ତୁ ମୋ ମୁହଁକୁ ଅନେଇ ରହିଥିଲା ।

'ଆଠଦିନ ପରେ ନାଗପୁର ଚାଲିଯିବୁ । ଏଇ କେତେ ଦିନ ଘରେ ରହିଲେ ହୁଏନାନି ? ତୋର ସବୁକାମ ବିଚିତ୍ର ।'

ମୁଁ କିଛି କହିଲିନି । ତଥାପି ବି ମା ମୋତେ ଅଣ୍ଡର୍ଯ୍ୟ ହେଲାଭଳି ଚାହିଁଥିଲା । ହଠାତ କହିଲା, 'ସେଠି କେଉଁ ଝିଅ ଦେଖି ଆସିନୁ ତ ଆଉ ?'

'ଧେତ୍ ! ତୋର କଥା ସବୁ ସେମିତି ।'

ମୁଁ ମାଆ ମୁହଁକୁ ନ ଚାହିଁ କହିଲି ଏବଂ ଯିବାର ପ୍ରସ୍ତୁତିରେ ଲାଗି ପଡ଼ିଲି ।

**

# ତିନି

ମୁମ୍ବାଇରୁ ବୋଟ୍ ଛାଡ଼ିଲା । ସାରାଦିନ ଆଉ ସାରା ରାତି ମୋତେ ଅସ୍ଥିର ଲାଗୁଥିଲା । ବୋଟ୍ ତା'ର ସ୍ୱାଭାବିକ ଗତିରେ ଚାଲୁଥିଲେ ବି ମୋତେ ଲାଗୁଥିଲା ଖୁବ୍ ଧୀର ଗତିରେ ଚାଲିଛି । ଅସ୍ଥିର ମନରେ ବୋଟ୍‌ର ଡ଼େକ ଉପରକୁ ଆସି ମୁଁ ଏପଟ ସେପଟ ହେଉଥିଲି । କେତେବେଳେ ବୋଟ୍ ଯାଇ ବନ୍ଦରରେ ପହଞ୍ଚିବ ସେଇ ଚିନ୍ତା ଥିଲା ମୋର । ମନ ଭିତରେ ଭୟ, ସଂକୋଚ, ଉତ୍ସାହ, ଆନନ୍ଦ ସବୁକିଛି ମିଶିଯାଇ କେମିତି ଗୋଟାଏ ଭିନ୍ନ ପ୍ରକାରର ଅନୁଭବ ହେଉଥିଲା ।

ବେଞ୍ଚ ଉପରେ ବସି ଅଥଳ ସମୁଦ୍ରର ନୀଳ ଜଳରାଶିକୁ ଚାହିଁଥିଲି । ଦୂରରେ ଯାଉଥିବା ମୋଟର ଲଞ୍ଚ ବୋଟ୍ ଅପେକ୍ଷା ଅଧିକ ବେଗରେ ଯାଉଥିବା ପରି ଦିଶୁଥିଲା । ମାମୁଁ ଘରକୁ ଯାଇ ଆସିବା ଅପେକ୍ଷା ସେଇ ଦୀପାବଳୀ ପରେ ଆସିଲାବେଳେ ମାନୁକୁ ସାଙ୍ଗରେ ନେଇ ଆସିଥିଲେ ଭଲ ହୋଇଥାଆନ୍ତା । ଗୋଟିଏ ଗୋଟିଏ ମୁହୂର୍ତ୍ତ କାଟିବା ମୋ ପକ୍ଷରେ କଷ୍ଟକର ହୋଇ ପଡୁଥିଲା ।

ସଂଧ୍ୟା ହୋଇ ଆସିବା ସହ ବାତାବରଣ ବିଚିତ୍ର ହୋଇପଡ଼ିଲା । ଅସ୍ତସୂର୍ଯ୍ୟର କିରଣରେ ଆକାଶରେ ବିଭିନ୍ନ ପ୍ରକାର ଆକୃତି ଦିଶୁଥିଲା । ହଣ୍ଡା ହାଣ୍ଡି ସବୁ ସତେ କି ଉଗୁଡ଼ା ହୋଇ ଥୁଆ ହୋଇଛି - ସେଇପରି ଦିଶୁଥିଲା । କିନ୍ତୁ ସେସବୁ ଦେଖିବାର ଆଗ୍ରହ ମୋର ହେଉ ନଥିଲା ।

ଓଲଟା ମାନୁ ଏଇନା କ'ଣ କରୁଥିବ, ସେଇ ଚିତ୍ର ମୋ ଆଖି ସାମ୍ନାରେ ଭାସି ଯାଉଥିଲା । ସଂଧ୍ୟାବେଳେ ମାନୁ ଆସି ଅଗଣାରେ ସେ ଜୁଇବୁଦା ପାଖରେ ଥାଏ । ଏଇନା ସେଇଠି ଫୁଲ ତୋଳୁଥିବ ଅଣ୍ଟାରେ ଲୁଗାକୁ ଖୋସିଦେଇ । ଫୁଲତୋଳା ସରିଯାଇଥିଲେ ସଂଧ୍ୟାଦୀପ ଦେଇ ଗାଉଥିବ, ଶୁଭଂ କରୋତି କଲ୍ୟାଣମ୍.......

ଏବେ ପିଣ୍ଡାରେ ଡ଼େରିହୋଇ ବସିଥିବ । ଛୁଞ୍ଚରେ ଗୋଟିଏ ଗୋଟିଏ ଫୁଲ ଗୁନ୍ଥି ଗଜରା ତିଆରି କରୁଥିବ । ତା' ସାମ୍ନାରେ ହୁଏତ କଲ୍ୟାଣୀ ବି ବସିଥିବ । ସେ

ବି ମାଳ ତିଆରି କରୁଥିବ ଫାସ ପକେଇ ମାମୁଁଙ୍କ ପାଇଁ । କଲ୍ୟାଣୀ ସେ ମାଳକୁ ମାମୁଁଙ୍କ ହାତରେ ବାନ୍ଧିଦେଲା ବେଳେ ତାଙ୍କ ମୁହଁ କେମିତି ଦିଶୁଥିବ ?

ଏଇସବୁ କଥା ଚିନ୍ତାକରି ମନକୁ ମନ ହସିଲି । ମାମୁଁଙ୍କର ଏ ବୟସରେ ବି ଏମିତି ସଉକି ।

ଦୁଇଦିନ ପୂର୍ବରୁ ମାନୁ ପାଖକୁ ଚିଠି ଲେଖି ଲଫାପାରେ ବନ୍ଦ କରି ପଠେଇ ଦେଇଥିଲି । ଚିଠିର ପ୍ରଥମ ଧାଡ଼ିରେ କଲ୍ୟାଣୀକୁ ଚିଠି ନ ଦେଖାଇବା ପାଇଁ ଲେଖିଥିଲି । କାରଣ ସେ ଚିଠିରେ ଖବର ଯେମିତି ଗୁରୁତ୍ୱପୂର୍ଣ୍ଣ ଥିଲା ତା ସହ ପଳେଇ ଯିବାର ସଙ୍କେତ ମଧ୍ୟ ଥିଲା । ପାହାନ୍ତା ପହରରୁ ମାନୁ ଶଗଡ଼ରେ ଆସି ବନ୍ଦରପାଖରେ ପହଞ୍ଚିଥିବ । ପ୍ରଥମ ଡଙ୍ଗାରେ ହିଁ ଯାଇ ବୋଟ୍‌ରେ ବସିବ । ମୁଁ ଇଖୋବା ସହିତ ଅନ୍ୟ ଗୋଟିଏ ଶଗଡ଼ରେ ପରେ ଯାଇ ବନ୍ଦର ପାଖରେ ପହଞ୍ଚିବି ଏବଂ ଶେଷ ଡ଼ଙ୍ଗାରେ ବସି ବୋଟ୍ ପାଖକୁ ଯାଇ ତା ପାଖରେ ପହଞ୍ଚିବି । ଅର୍ଥାତ ମାନୁ ମୋ ସହ ଯାଉଛି ବୋଲି ଇଖୋବା ସୁଦ୍ଧା ଜାଣିପାରିବନି। ଯଦି ବି ଇଖୋବା ଜାଣିପାରେ ସେଥିରେ କିଛି ସମସ୍ୟା ଆସିବାର ନାହିଁ । ତା ହାତରେ ପାଞ୍ଚଟଙ୍କାର ନୋଟଟିଏ ଗୁଞ୍ଜିଦେଲେ ତା' ପାଟିରୁ ଭୁଲରେ ବି ଏକଥା ବାହାରିବ ନାହିଁ ।

ମାନୁ ହୁଏତ ଏବେ ତା' ଘରଭିତରେ କବାଟ କିଳି ଦୀପ ଜଳେଇ ସେ ଚିଠିଟିକୁ ପଢୁଥିବ । ମନକୁମନ ଅସ୍ଥିର ହୋଇ ପଢୁଥିବ । ଠିକ୍ ମୋରି ପରି । ଭବିଷ୍ୟତର କଳ୍ପନାରେ ତା' ଦେହରେ ବି କମ୍ପନ ସୃଷ୍ଟି ହେଉଥିବ । ପଳେଇ ଯିବା କଥା ଚିନ୍ତାକରି ରାତିସାରା ତାକୁ ନିଦ ହେଉନଥିବ । ଶଗଡ଼ ନ ମିଳିଲେ ବି ଟିକେ କଷ୍ଟ ସହି ବନ୍ଦର ଯାଏ ଚାଲି ଚାଲି ଆସିବା କିଛି ବେଶୀ କଠିନ କାମ ନଥିଲା ତା' ପାଇଁ । ତାଙ୍କ ଘରର ସେ ପଛପଟ କବାଟ ଖୋଲି ପାହାନ୍ତା ପହରରୁ ଘରୁ ବାହାରି ଆସିଲେ ଦୁଇ ଘଣ୍ଟାର ରାସ୍ତା । ବାଟରେ ଯଦି ମୋ ସହିତ ଭେଟ ହୋଇଯାଏ ମୋ ସାଥିରେ ଶଗଡ଼ରେ ବସି ଆସିବାରେ ବି କିଛି ଅସୁବିଧା ନାହିଁ ।

କିନ୍ତୁ ମୁମ୍ବାଇରେ ଯାଇ ପହଞ୍ଚିବା ପର୍ଯ୍ୟନ୍ତ ସବୁକିଛି ସୁରୁଖୁରୁରେ ହୋଇଯିବା ମଙ୍ଗଳ ।

ଆସିଲା ବେଳକୁ ଦୁଇଜଣ ଯାକ ବୋଟ୍‌ରେ ବସିଯିବା ପରେ, ବୋଟ୍ ବନ୍ଦର ଛାଡ଼ିଲେ ଆଉ କିଛି ଭୟ ନାହିଁ । ସେତେବେଳେ ଗୋଟିଏ କ୍ୟାବିନ ନେବି ବୋଲି ସ୍ଥିର କରିସାରିଥିଲି । କ୍ୟାବିନରେ ଦୁଇଟି ଗଦି ଥାଏ । ସ୍ୱତନ୍ତ୍ର କୋଠରୀ । ଅନ୍ୟ

କେହି ବି ସେଠି ନଥିବେ । ସାରା ରାତି ଖୁବ୍ ମଜାରେ କଟିବ ।

ସକାଳେ ବନ୍ଦର ପାଖ ହୋଇ ଆସିବାରୁ ପାହାଡ଼ ଉପରେ ଥିବା ବଙ୍ଗଳାଟି ଆସିଗଲା ଦୃଷ୍ଟି ସାମ୍ନାକୁ । ତା ଉପରେ ନଜର ପଡୁପଡୁ ଦେହରେ ଗୋଟାଏ ଶୀହରଣ ଖେଳିଗଲା । ମନେ ମନେ ଭାବିଲି ମାନୁକୁ ନେଇ ଏମିତି ପଳେଇଯିବା ଅପେକ୍ଷା ଏଇ ବଙ୍ଗଳାରେ ଦୁଇଦିନ ରହିଗଲେ ଆହୁରି ଭଲ ହୁଅନ୍ତା । କାଲି ପୁଷପୂର୍ଣ୍ଣିମା ଗଲା । ଜହ୍ନରାତି ଏବେ । ଦୁଇଦିନ, ବଙ୍ଗଳାରେ ରହି ଜହ୍ନରାତିକୁ ମନ ଭରି ଉପଭୋଗ କରି ହୁଅନ୍ତା । ଅନ୍ତତଃ ଗୋଟିଏ ରାତି ପଛେ ହଉ ! ଆଜି ମାନୁ ସହ ଦେଖାହେବା ବେଳେ ତାକୁ କହିବି ଏ କଥା । କହିବି ଆମର ପ୍ରଥମ ରାତି ଏଇ ବଙ୍ଗଳାରେ କଟିବ । କେତେ ବର୍ଷର ସ୍ୱପ୍ନ ମୋର ! ନାଗପୁର ଗଲାପରେ ପୁଣି ଥରେ ଫେରି ଆସିବାର ସୁବିଧା ମିଳିପାରେ ନ ମିଳିପାରେ କିଏ କହିବ! ଯଦି ବି ସେ ସୁଯୋଗ ମିଳେ ତଥାପି ବି ପୁରୁଣା ହୋଇଗଲାପରେ ନବଦାମ୍ପତ୍ୟର ଏ ଉତ୍ସୁକତା କ'ଣ ଆଉ ରହିଥିବ ! ନାଁ, ପ୍ରଥମରାତି ଆମର ସେଇ ବଙ୍ଗଳାରେ ହିଁ କଟିବ ବୋଲି ସ୍ଥିର କଲି ।

ବୋଟ୍ ଆସି ବନ୍ଦରରେ ଲାଗିଲା । ମୁଁ ଡଙ୍ଗାରେ ଯାଇ କୂଳରେ ଓହ୍ଲେଇଲି । ଆଜି ସେଠି ଲଖୋବା ଶଗଡ଼ ନେଇ ଆସି ଅପେକ୍ଷା କରିବାର ସମ୍ଭାବନା ନଥିଲା । କାରଣ ମୁଁ ଆଗରୁ ଜଣେଇନି । ଏମିତି ହଠାତ୍ ଯାଇ ପହଞ୍ଚି ଘରେ ସମସ୍ତଙ୍କୁ ଚମକାଇଦେବି ।

ବନ୍ଦର ଉପରେ ଭଡ଼ା ଶଗଡଟିଏ କଲି । ସାଙ୍ଗରେ ସେମିତି ତ ଜିନିଷ କିଛି ନଥିଲା । ଗୋଟିଏ ଛୋଟ ହ୍ୟାଣ୍ଡବ୍ୟାଗ ଆଉ ଗୋଟିଏ କାଗଜର ପ୍ୟାକେଟ । ସେ ପ୍ୟାକେଟରେ ମାନୁପାଇଁ ଗୋଟିଏ ଶାଢ଼ୀ ଆଉ ଚୁଡ଼ି ଥିଲା । ଅବଶ୍ୟ ତାକୁ ନ ଆଣିଥିଲେ ବି ଚଳିଥାଆନ୍ତା । କିନ୍ତୁ ମାନୁକୁ ଖୁସି କରିବାପାଇଁ ମୁଁ ସେସବୁ ଆଣିଥିଲି ।

ମନ୍ଦିରପାଖରେ ମୁଁ ଶଗଡ଼କୁ ଛିଡ଼ା କଲି ।

'ବଳଦକୁ ଅଧ ଘଣ୍ଟା ପାଇଁ ଖୋଲିଦିଅ । ମୁଁ ମନ୍ଦିରରୁ ଯାଇ ଆସୁଛି ସେତିକି ସମୟ ଭିତରେ ।' ଗାଡ଼ିବାଲାକୁ ଏତିକି କହିଦେଇ ମୁଁ ପ୍ୟାକେଟଟି ଧରି ମାନୁ ଘର ଆଡ଼କୁ ଚାଲିଲି ।

ବାଉଁଶ ବେଢ଼ଁ ଅଗଣାରେ ପଶିଲି ।

ଭିତର ପିଣ୍ଡାରେ ଖୁଣ୍ଟକୁ ଆଉଜି କଲ୍ୟାଣୀ ବସିଥିଲା । ତା ସାମ୍ନାରେ କାନୁକୁ

ଆଉଜି ପୋଷ୍ଟମାଷ୍ଟର ବୁଢ଼ା ବସିଥିଲା । ସିତୁ ମୃଦଙ୍ଗୀ କିନ୍ତୁ ସେଦିନ ସେଠି ନଥିଲା । ତାକୁ ନ ଦେଖି ମୁଁ ଟିକେ ଆଶ୍ଚର୍ଯ୍ୟ ହେଲି ।

'କିଏରେ ?' କଲ୍ୟାଣୀ ମୁଣ୍ଡଟେକି କଣେଇକରି ଅନେଇଲା ।

'ମୁଁ,' କହିଦେଇ ମୁଁ ଭିତରକୁ ପଶିଲି ।

'ବାବୁଲ, ଆରେ ତୁ କେମିତି ଆସିଲୁ ରେ ଏଇନା ? ବସ, ବସ ।' ମସିଣା ଲମ୍ବେଇଦେଇ କହିଲା କଲ୍ୟାଣୀ ।

'ଏଇନା ଇ ତ ଆସୁଛି –' କହି ମୁଁ ବସିପଡ଼ିଲି । ପାଖରେ ପ୍ୟାକେଟିକୁ ରଖିଦେଲି ।

'ବୋଟ୍‌ରେ ଆସିଲୁ ? ଘରେ ସବୁ ଭଲ ତ ?'

'ହଁ' କହିଦେଇ ମୁଁ ମସିଣାରେ ହୋଇଥିବା ଡ଼ିଜାଇନ୍‌କୁ ଲକ୍ଷ୍ୟ କରି ଚାହିଁଲି ।

ପୋଷ୍ଟମାଷ୍ଟର ଉଠିଲା । କାହାକୁ କିଛି ନକହି ଧୋତିର କୁଞ୍ଚ ଝାଡ଼ି ଝାଡ଼ି ବାହାରକୁ ଚାଲିଗଲା । ମୁଁ ତା ପିଠିଆଡ଼କୁ ଚାହିଁ ରହିଲି । ଧୋତିକୁ ହାତରେ ଧରି ସେ ଅଗଣାକୁ ଯାଇ ବାଉଁଶ ତେଢ଼ିଁ ରାସ୍ତା ଉପରକୁ ଚାଲିଗଲା ।

ଗାଲରେ ହାତଦେଇ କଲ୍ୟାଣୀ ଗୋଟିଏ ଦୃଷ୍ଟିରେ ମୋ ଆଡ଼େ ଚାହିଁ ରହିଥିଲା । ମୋର ସନ୍ଦେହ ହେଲା । ଭାବିଲି ସେ ଆଉ ବଦଳି ଯାଇଛି କି ! କାରଣ ଆଗଭଳି ସେ ହାଉ ହାଉ ହୋଇ ଗପୁ ନଥିଲା । ହସୁ ନଥିଲା ବି । କେବଳ ମୋ ମୁହଁକୁ ଚାହିଁ ରହିଥିଲା ପଲକ ନ ପକେଇ ।

'ମାନୁ କୁଆଡ଼େ ଯାଇଛି କି ?' ମୁଁ ପଚାରିଲି ।

'କିଏ ?'

'ମାନୁ..... ।'

' କାହିଁକି, କିଛି କାମ ଅଛି ତା ପାଖରେ ?'

'ନାଁ ଯେ ... ସେ କ'ଣ ମନ୍ଦିରକୁ ଯାଇଛି ?'

'ନାଇଁ ।'

ମୁଁ ଭିତରେ ଭିତରେ ଅସ୍ଥିର ହୋଇ ପଡୁଥିଲି । ମନରେ ଆଶଙ୍କା ହେଲା । ମାନୁ ଯଦି ଠିକ ଭାବେ ବୁଝିପାରି ନଥିବ ଆଉ ଆଜି ହିଁ ଭୋରରୁ ବାହାରି ଯାଇଥିବ ?

'କୁଆଡ଼େ ଯାଇଛି ମାନୁ ?' ମୁଁ ଆଉଥରେ ପଚାରିଲି ।

'ପାଖ ଗାଁକୁ ।'

'କାହା ଘରକୁ ?' ମୋ ଛାତି ଧକଧକ ହେଲା ।

'ମୋ ପିଉସୀ ଝିଅ ଭଉଣୀ ସେଠି ରହେ । ସିତୁକୁ କହିଲି ସେ ନେଇ ଛାଡ଼ିଦେଇ ଆସିଲା । ଏଠି ରହିବା ଠିକ ହେବନି ।'

'କ'ଣ ଠିକ ହେବନି ?'

'ମୋ କର୍ମ... ଆଉ ନହେଲେ କ'ଣ ?' କଲ୍ୟାଣୀ ଉପରକୁ ଚାହିଁଲା ।

'କ'ଣ ହୋଇଛି ? ସବୁ ଭଲ ତ ?'

'ତା ଦେହ ଭଲ ନାହିଁରେ ପୁଅ । ତୁ ଏମିତି ହଠାତ୍ ଆସି ପହଞ୍ଚୁଛୁ । ଦେଖିଲା ବେଳକୁ ସେ ଘରେ ନାହିଁ ।'

'ତା ଦେହ ଭଲ ନାହିଁ ମାନେ କ'ଣ ହୋଇଛି ତାର ।'

'ଝିଅ ପିଲାର ଦେହ । ଭଲ କ'ଣ ଆଉ ମନ୍ଦ କ'ଣ ?'

ସେତେବେଳକୁ ମୋତେ ଏତେ ଅସ୍ଥିର ଲାଗୁଥିଲା ଯେ ଉଠିଯାଇ କଲ୍ୟାଣୀ ମୁଣ୍ଡରେ ଦି'ଟା ଛେଚି ଦବାକୁ ମନହେଉଥିଲା । ମନର ରାଗ ଚାପିଦେଇ କହିଲି, 'ହଁ ଯେ ତାର ହୋଇଛି କ'ଣ ?' ମୁଁ ଟିକେ ଚଢ଼ା ଗଳାରେ ପଚାରିଲି ଏତକ ।

'ତା' ଦେହ ଠିକ ନାହିଁ । କ'ଣ ହେବ ତା'ର ।'

ମୋ କଲିଜା ଥରିଗଲା । ଦି' ମାସ ପୂର୍ବରୁ ଯାତ୍ରା ଦିନର ସେ ରାତି ।

'କେତେଦିନ ହେଲାଣି ?'

'ପାଞ୍ଚ ମାସ ।'

'ପାଞ୍ଚ ମାସ ?'

ମୋ ପାଟିରୁ କଥା ବି ଠିକରେ ବାହାରୁ ନଥିଲା ।

'ଦୀପାବଳୀ ବେଳେ ମୁଁ ଆସିବା ଆଗରୁ...'

ମୁଁ କିଛି କହି ପାରିଲିନି । କଣ୍ଠରୁ ଶବ୍ଦ ବାହାରୁ ନଥିଲା ।

'ସେତେବେଳେ ତା'ର ତିନିମାସ ହୋଇଥିଲା ।' କଲ୍ୟାଣୀ ମୁହଁରେ ଲୁଗା ରଖି କହିଲା ।

ମୁଁ ଠକି ଯାଇଛି । ପୁରାପୁରି ଠକି ଯାଇଛି ।

'ତୁ ରାଗିବୁନିରେ ବାବୁଲ । ଆମର ତ ଦେବଦାସୀରେ ଜନ୍ମ । ପେଟପାଣି ଦେବ ଯିଏ ଶେଯ ବି ତାଆର । ସ୍ନେହମମତା, ଭଲ ପାଇବା - ଏସବୁ ସହ ଆମର କିଛି ସମ୍ବନ୍ଧ ନାହିଁ । ସବୁ ବିଷୟ ଆଶାକରି ଲାଭ ବି କ'ଣ ?'

କଲ୍ୟାଣୀ କହୁ କହୁ କାନ୍ଦିବା ଆରମ୍ଭ କରିଦେଲା । କାନ୍ଦି କାନ୍ଦି ତା ନାକ ଲାଲ୍ ଦେଖାଯାଉଥିଲା । ଆଖି ବି ନାଲି ଦିଶୁଥିଲା । ବାହୁନି ବାହୁନି ଗୁମୁରି ଗୁମୁରି କାନ୍ଦୁଥିଲା ସେ ।

'କାନ୍ଦୁଛ କାହିଁକି ?'

'ତା'ରି ପାଇଁ । ତା'ସହିତ ମୋର ବି କର୍ମ ପୋଡ଼ିଗଲା ରେ ପୁଅ !'

କଲ୍ୟାଣୀ ସେମିତି କାନ୍ଦୁଥିଲା । ଲୁଗାକାନିରେ ଆଖି ପୋଛୁଥିଲା । କାନ୍ଦି କାନ୍ଦି କୋହ ଉଠିଯାଉଥିଲା ତା'ର । କଲ୍ୟାଣୀକୁ ଏତେ ବିକଳ ହୋଇ କାନ୍ଦିବାର ମୁଁ କେବେ ଦେଖି ନଥିଲି । ଏ ଜନ୍ମରେ ଯେ ତାକୁ କେବେ କାନ୍ଦିବାକୁ ପଡ଼ିପାରେ, ସେ ବିଷୟ ମୁଁ କେବେ କଳ୍ପନା ବି କରି ନଥିଲି ।

ସେଠି ତିଳେମାତ୍ର ରହିବାପାଇଁ ମୋର ଆଉ ଇଚ୍ଛା ହେଲାନାହିଁ । ସେଠି ବସିଥିଲେ ଟିକେ ପରେ ହୁଏତ ମୁଁ ବି ଭେଁ ଭେଁ ହୋଇ କାନ୍ଦିଥାନ୍ତି କି କ'ଣ ।

ବିଜୁଳି ଭଳି ମୁଁ ଉଠି ଛିଡ଼ା ହୋଇଗଲି । କାନ୍ଥରେ ଡେରିଥିବା ପ୍ୟାକେଟଟିକୁ ଉଠେଇଲି । ପିଣ୍ଡାରୁ ତଳକୁ ଓହ୍ଲେଇ ବାହାରକୁ ଚାଲି ଆସିଲି । ମନେ ମନେ ପ୍ରତିଜ୍ଞା କଲି, ଏ ଜନ୍ମରେ ଯେମିତି ଏଠି କେବେ ପାଦ ନ ପକାଏ !

କଲ୍ୟାଣୀ ବି ଉଠି ଛିଡ଼ା ହୋଇଲା ।

'ସେ ପ୍ୟାକେଟରେ କ'ଣ ଅଛି ?'

କଲ୍ୟାଣୀ ପଚାରିଲା । ମୁଁ କିନ୍ତୁ କିଛି ଉତ୍ତର ନଦେଇ ଆଗକୁ ବଢ଼ିଲି । ମୋ କଣ୍ଠରୁଦ୍ଧ ହୋଇଯାଇଥିଲା । ବାଉଁଶ ଉପରେ ଗୋଡ଼ ରଖିଲା କ୍ଷଣି ସେ ପୁଣି ଥରେ କହିଲା ।

'ଆରେ ବାବୁଲ, ରାଗିବୁନିରେ ପୁଅ । ଆମର ଜନ୍ମ ଇ ଏମିତି !'

ତା'ର ବି ଗଳା ଭାରି ଭାରି ଶୁଭୁଥିଲା ।

ମୁଁ କିଛି କହିଲିନି । ମୋ ଆଖିରେ ଲୁହ ଟଳମଳ ହେଉଥିଲା । ପାଦତଳର ରାସ୍ତା ମତେ ଖାଲଢ଼ିପ ଦିଶୁଥିଲା । ମୁଁ କୌଣସିମତେ ନିଜକୁ ସମ୍ଭାଳି ଶଗଡ଼ ପାଖକୁ ଆସିଲି ।

ବଳଦ ପାକୁଳି କରୁଥିଲେ ।

'ଚାଲ -'

ଗାଡ଼ିବାଲା ବଳଦ ଯୋଚିଲା । ମୁଁ ଯାଇ ଶଗଡ଼ରେ ବସିଲି । ଗାଡ଼ି ଆଗକୁ ଚାଲିଲା ।

ମାମୁଁଙ୍କ ଘର ହେବାକ୍ଷଣି ଆଖିରୁ ଲୁହ ପୋଛିଲି । ମୋ ସ୍ୱରରୁ ଯେମିତି କିଛି ଜଣା ନପଡ଼େ ସେଥିପାଇଁ ନିଜକୁ ପ୍ରସ୍ତୁତ କଲି । ମୁହଁ ଗଳା ସଫା କଲି । କଣ୍ଠ କେମିତି ଶୁଭୁଛି ଜାଣିବା ପାଇଁ ଗାଡ଼ିର ଶବ୍ଦ ସହିତ ଗୁଣୁଗୁଣୁ ହୋଇ ଗୀତ ଗାଇବାକୁ ଚେଷ୍ଟା କଲି ।

'ଧେତ୍ ! ସ୍ୱର ତ ପୁରା ଅଖାଡୁଆ ଶୁଭୁଛି ।' ମନକୁ ମନ କହିଲି ।

ସ୍ଥିର ମନରେ ସବୁକିଛି ଭୁଲିଯିବାପାଇଁ ଚେଷ୍ଟାକଲି । ଗାଡ଼ି ଆସି ମାମୁଁଘର ଦୁଆର ମୁହଁରେ ପହଞ୍ଚିଲା । ଆଗକୁ କିଛି ଖବର ନ ଦେଇ ଏମିତି ଆସି ପହଞ୍ଚି ଯାଇଥିବାର ଦେଖି ମାମୁଁ ଆଶ୍ଚର୍ଯ୍ୟରେ ମୋ ମୁହଁକୁ ଚାହିଁଥିଲେ ।

'କିରେ, ଆଗରୁ ଖବର ଦେଲୁନି କାହିଁକି ? ଲଖୋବାକୁ ଗାଡ଼ି ନେଇ ଯିବାପାଇଁ କହିଥାଆନ୍ତି ।' ମାମୁଁ କୂଅ ପାଖରେ ମଇଁଷି ଉପରେ ପାଣି ଛାଟୁ ଛାଟୁ କହିଲେ ।

ମୁଁ ହସିବାର ବାହାନା କରି କୂଅ ପାଖକୁ ଗଲି । ମାମୁଁଙ୍କୁ ପ୍ରଣାମ କରି ହାତଗୋଡ଼ ଧୋଇ ଭିତରକୁ ପଶିଲି ।

ମାଇଁ ତାଙ୍କର ସବୁତକ ବଳ ଖଟେଇ ମସଲା ବାଟିବାରେ ବ୍ୟସ୍ତ ଥିଲେ । କାନ୍ଥରେ ଡ଼େରା ହୋଇଥିବା ପିଢ଼ା ଖଣ୍ଡେ ଟାଣିଆଣିଲି । ମାଇଁଙ୍କ ପାଦଛୁଇଁ ସେ ପିଢ଼ାରେ ଯାଇ ବସିଲି । କଣ୍ଠଟା ପୁରା ଓଜନିଆ ଲାଗୁଥିଲା । କେଉଁ ମୁହୂର୍ତ୍ତରେ କୋହ ଉଠିଯିବ ବୋଲି ଆଶଙ୍କା ହେଉଥିଲା ।

ମାଇଁଙ୍କର ମୋ ଉପରେ ଦୃଷ୍ଟି ପଡ଼ିବା କ୍ଷଣି ଚମକି ପଡ଼ି କହିଲେ, 'ଆରେ ବାବୁଲ, ତୁ କେତେବେଳେ ଆସିଲୁରେ ?'

ମୁଁ କିଛି କହିଲିନି । ମୁହଁ ଉପରେ ରୁମାଲ ରଖି ସେମିତି ବସିରହିଲି । ଆଖିରୁ କାନରୁ ସବୁଥିରୁ ଯେମିତି ବାମ୍ପ ବାହାରୁଥିଲା ।

'ଆଗରୁ ସିନା ଖବର ଦେଇଥାଆନ୍ତୁ । ଲଖୋବା ଯାଇଥାନ୍ତା ଆଣିବାପାଇଁ ।' ମାଇଁ କହିଲେ ବ୍ୟସ୍ତ ହୋଇ ।

'କାହିଁକି ତାକୁ ହଇରାଣ କରିଥାଆନ୍ତି, ଆଜି ଦିନକ ତ ରହିବି ।' ମୁଁ କଷ୍ଟେ ମଷ୍ଟେ ଏତିକି କହିଲି ।

'ଆଁ, ଏତେ ଛାନିଆ କାହିଁକି ?'

'କାମ ଅଛି ତ, ସେଇଥିପାଇଁ ।'

'କୁଆଡ଼େ ଯାଇପାରିବୁନି । ଆସିଛୁ ତ ଚାରିଦିନ ଆଗ ରହ । ତା'ପରେ ଦେଖିବା ।'

'ନାଁ ମାଇଁ, ଯେମିତି ହେଲେ ବି କାଲି ଯିବାକୁ ପଡ଼ିବ ।'

'ତା' ହେଲେ ଏମିତି ଦିନିଟିଏ ପାଇଁ ଆସିଲୁ କାହିଁକି କହିଲୁ ? କାହା ମୁହଁ ଦେଖିବାକୁ ଏତେ ହଇରାଣ ହୋଇ ଆସିଲୁ ?'

ମୁଁ କିଛି କହିଲିନି । ମାଇଁ ମୋପାଖରେ ଆଣି ଚାହା ଥୋଇଲେ। ମୋ ମୁହଁକୁ ଲକ୍ଷ୍ୟ କରି ସେଇଠି ମୋରି ଆଗରେ ବସିଲେ । ତାଙ୍କର ସେ ନଜରରେ ମୁଁ ଘାବରେଇ ଗଲି ।

'ତୋତେ ବୋଧେ ଭଲ ଲାଗୁନି । ବାଟରେ କିଛି ଅସୁବିଧା ହୋଇନି ତ ? ତୋ ମନଟା କାହିଁକି ଭଲ ଥିଲା ପରି ଦିଶୁନି ।'

'ନାଁ ମ ! ସେମିତି କିଛି ନୁହଁ ।'

'ବାଟ କ'ଣ କମ ହେଲାଣି ? ସେଥିରେ ପୁଣି କାଲିଠାରୁ ଥଣ୍ଡା ପବନ ଦଉଛି ଯେ ଦେହ ଶିରି ଶିରି ହୋଇଯାଉଛି ।'

'ଚାହା ପିଇସାରିବା ପରେ ମୋତେ ଟିକେ ଭଲ ଲାଗିବ ।'

ମାଇଁ ମୋ ପାଇଁ ବ୍ୟସ୍ତ ହୋଇ ପଡୁଥିଲେ ।

ରୁମାଲରେ ମୁହଁ ପୋଛି ଆସି ବାହାର ପିଣ୍ଡାରେ ବସିଲି । ଛନ୍ଦିହୋଇ ପଡ଼ିଥିବା ମୋ ଭାଗ୍ୟକୁ ବାହୁନୁଥିଲି ମନେ ମନେ ।

ମାମୁଁ ଗାଧୋଇ ସାରି ଆସିଲେ । ଫୁଲ ପାଚିଆରୁ ଫୁଲସବୁ ପିଉଳ ତସଳାକୁ ଓଜାଡ଼ି ଦେଉ ଦେଉ କହିଲେ, 'ଆଠଦିନ ରହିବୁ ତ ଏଇନା ?'

'ନାଁ, ମୋତେ କାଲି ଫେରିଯିବାକୁ ପଡ଼ିବ ।'

'ଏତେ ଶୀଘ୍ର କାହିଁକି ?'

'ହଁ ଯିବାକୁ ହିଁ ହେବ । ନାଗପୁରରେ ନୂଆ ଚାକିରୀ ମିଳିଛି ।'

'ତା ହେଲେ ଆସୁଥିଲୁ କାହିଁକି ?'

'ଠାକୁରଙ୍କ ପାଖରୁ ହୁକୁମ ନେବାକୁ ଆସିଚି ।'

ତସଳା ଧରି ମାମୁଁ ଠାକୁରଘର ଭିତରକୁ ଚାଲିଗଲେ ।

ଅଗଣାରେ ଦୁଇଟି ଛୁଆ ବସି କଟ ଖେଳୁଥିଲେ । ତାଙ୍କ ମୁହଁ କେତେ ସରଳ ଓ ନିଷ୍ପାପ ଦିଶୁଥିଲା । ଭାବିଲି ମଣିଷ ବଡ଼ ନହୋଇ ଏମିତି ଛୋଟ ହୋଇ ରହିଲେ ଭଲ । ଯେତିକି ବଡ଼ ହେବ ପରସ୍ପର ସହ ହିଂସା ଦ୍ୱେଷ ଛଳନା ପ୍ରତାରଣା ସେତିକି ଅନୁପାତରେ ବଢ଼ି ଚାଲିବ । ପିଲାଦିନଟା ସତରେ କେତେ ଭଲ ! ମଣିଷ ଆଦୌ

ବଡ଼ ନହେଲେ ଭାରି ଭଲ ହୁଅନ୍ତା ସତରେ !

ଲଖୋବା କୂଆଡ଼େ ଯାଇଥିଲା ଆସି ପହଞ୍ଚିଗଲା । କାନ୍ଧରେ ପଡ଼ିଥିବା ଗାମୁଛା କାନିର ଗଣ୍ଠି ଖୋଲି ସେଥିରେ ରଖିଥିବା ଲଡୁ ଦୁଇଟି ବାହାର କରି ସେ ପିଲା ଦୁଇଟିଙ୍କ ହାତକୁ ବଢ଼େଇ ଦେଲା । ତାଙ୍କରି ଆଡ଼େ ଚାହିଁ ସେଇଠି ପିଣ୍ଡାରେ ବସି ରହିଲା । ସେଇ ପିଲାଙ୍କ ଉପରେ ତା'ର ଦୃଷ୍ଟି ସ୍ଥିର ହୋଇ ରହିଥିଲା । ହଠାତ୍ ତା ଦୃଷ୍ଟି ମୋ ଉପରେ ପଡ଼ିଯିବାରୁ ଚିତ୍କାର କରି କହିଲା, 'ହେ ପ୍ରଭୁ... ! ବାବୁ, ତୁମେ କେତେବେଳେ ଆସିଲ ? ଆଗରୁ ଖବର ଦେଲନି କାହିଁକି ? ମୁଁ ଶଗଡ଼ ନେଇ ବନ୍ଦର ଯାଏ ଯାଇ ନଥାନ୍ତି !'

'ଲଖୋବା, ଆରେ ମୁଁ ପରା ହଠାତ୍ ଚାଲିଆସିଲି !'

'ଘରେ ସବୁ ଠିକ ଠାକ ଅଛି ତ ?'

'ହଁ... । ଆରେ ଏ ଛୁଆ ଦୁଇଜଣ କାହାର ? କ'ଣ ତୋ' ଛୁଆ ଏମାନେ ?'

'ହଁ, ଏବେ ତ ଏଇଠି ରହି ଖାଉଛନ୍ତି ।'

'ଆରେ ବାଃ, ଭଲ କଥା ଯେ ଏଠି କେମିତି ?'

'ମାମୁଁ କହିଲେ ପିଲାଏ ଏଇଠି ରୁହନ୍ତୁ । ଠାକୁରଙ୍କ ଦୟା । ପିଲା ଦି'ଟା ଖାଇପିଇ ବଞ୍ଚିଯାଆନ୍ତୁ ଆଗ !'

ଲଖୋବା ହସିଦେଲା । କହିଲା, 'ପାଣି କାଢ଼ି ଦଉଛି । ଚାଲ ଗାଧୋଇ ପଡ଼ିବ ।' କୂଅ ମୂଳକୁ ଚାଲିଗଲା ସେ ଏତିକି କହି ।

ମୁଁ ବ୍ୟାଗ ଭିତରୁ ତଉଲିଆ କାଢ଼ିଲି । ଶାଢ଼ୀ ଚୁଡ଼ି ଥିବା ପ୍ୟାକେଟଟିକୁ ବ୍ୟାଗର ପୁରା ତଳେ ରଖିଦେଲି । ଯେମିତି କି ଉପରକୁ ଜଣାପଡ଼ିବନି । ବ୍ୟାଗ ବନ୍ଦ କରି କୂଅମୂଳକୁ ଗଲି । ଯାଉ ଯାଉ ଭାବିଲି ଯାହା ବି ହୋଇଛି ଗୋଟିଏ ପ୍ରକାରେ ଦେଖିଲେ ମଙ୍ଗଳ ହିଁ ହୋଇଛି । ବାହାଘର ହେବା ଆଗରୁ ଏମିତି ଭାଙ୍ଗିଗଲା । ଠାକୁରଙ୍କ କୃପା । ନ ହେଲେ ସେ ମୋ ସହ ପଳେଇଥାଆନ୍ତା । ଆଉ ଚାରିମାସପରେ ପିଲାର କୁଆଁ କୁଆଁ ରାବ ଶୁଭିଥାଆନ୍ତା । କାହାକୁ ମୁହଁ ଦେଖେଇବା ଭଳି ପରିସ୍ଥିତି ମୋର ଆଉ ଥାଆନ୍ତା କି ? ମଣିଷ କେତେ ବେଇଜ୍ଜତ ହୋଇଥାଆନ୍ତା । ହୁଏତ ଅନ୍ୟ କେହି ଜାଣିପାରି ନଥାନ୍ତେ । କିନ୍ତୁ ସାରାଜୀବନ ମାନୁ କୋଳରେ ଜନ୍ମ ନେଇଥିବା ସନ୍ତାନକୁ ମନମାରି ନିରବରେ ନିଜର ସନ୍ତାନ ବୋଲି ସ୍ୱୀକାର କରିବାକୁ ପଡ଼ିଥାଆନ୍ତା । ତା'ହେଲେ ଲଖୋବା ଆଉ ମୋ ଭିତରେ ଫରକ କ'ଣ ରହିଥାଆନ୍ତା ?

ଦେହରେ ପାଣି ଢ଼ାଳିଲି । ଲଖୋବା ସାବୁନ ଦେଇ ମୋ ପିଠି ଘଷିବା ଆରମ୍ଭ କରିଦେଲା । ପିଠି ଘଷୁ ଘଷୁ କହିଲା, 'ମାସେ ଖଣ୍ଡେ ରହିବ ତ ?'

'ମାସେ ? ଆରେ କାଲି ସକାଳେ ଯିବି ।'

'ଏତେ ଜଲଦି ?'

'ଯିବାକୁ ପଡ଼ିବରେ । ଅର୍ଜେଣ୍ଟ କାମ ଅଛି ।'

'ତୁମେ ଆସିବ ବୋଲି ମୋତେ ଲାଗୁଥିଲା । ଭାବୁଥିଲି ଯାରି ଭିତରେ ତୁମେ ନିଶ୍ଚୟ ଆସି ପହଞ୍ଚିବ ।'

ମୁଁ ଚମକି ପଡ଼ିଲି ।

'କିରେ କେମିତି ?'

'ଦୁଇଦିନ ତଳେ ମାନୁ କହୁଥିଲା । ତୁମେ ଯା ଭିତରେ ଆସିବ ।'

'ସେ କେମିତି ଜାଣିଲା ?' ମୁଁ ନଜାଣିଲା ପରି ପଚାରିଲି ।

'ନାଇଁ ସେମିତି ନୁହଁ ଯେ, ତାକୁ ବି ଲାଗୁଥିଲା ତୁମେ ଆସିବ ବୋଲି ।'

ମୋତେ କାନ୍ଦିବାକୁ ଇଚ୍ଛା ହେଲା । ଆଖିରେ ଲୁହ ଭର୍ତ୍ତି ହୋଇ ଯାଉଥିଲା । ତାକୁ ଲୁଚେଇବାପାଇଁ ମୁଁ ନୋଟାରେ ପାଣି ନେଇ ମୁଣ୍ଡ ଉପରେ ଢାଳିବା ଆରମ୍ଭ କରିଦେଲି ।

'କୁଆଡ଼େ ଅନ୍ୟ ଗାଁକୁ ଯାଇଛି ପରା ?'

'କିଏ ମ ?'

'ସେଇ -'

'ମାନୁ ?'

'ହଁ ।'

'ଯାଇଥିଲେ ଯାଇଥିବ । ଦୁଇଦିନ ତଳେ କିନ୍ତୁ ଏଇଠି ଥିଲା ।'

ମୁଁ ସେମିତି ପାଣି ଢାଳୁଥିଲି ଦେହମୁଣ୍ଡ ଉପରେ ।

'କ'ଣ ଖବର ଦେବକି ?' ଲଖୋବା ପଚାରିଲା ।

'କାହାକୁ ?'

'ମାନୁକୁ ।'

'କି ଖବର ?'

'ଶୀଘ୍ର ଘରକୁ ଫେରି ଆସିବ ବୋଲି ।'

'କାହିଁକି ?'

'ତୁମେ ଆସିଛ ତ, ସେଇଥି ପାଇଁ !'

'କିନ୍ତୁ କାହିଁକି ?'

'ନାଇଁ ଯେ, ସବୁବେଳେ ସେ ତୁମକଥା ପଚାରେ ତ ! ପ୍ରତି ଚାରିଦିନରେ ତୁମକଥା ନିଶ୍ଚୟ ପଚାରିବ । ଖବର ପାଇଲାକ୍ଷଣି ଚାଲି ଆସିବ ଯେଉଁଠି ଥିଲେ ବି !'

ଭାବିଲି ଖବର ଦେବି । ତାକୁ ଡକେଇ ଆଣିବି । ଗାଲରେ ଦି' ଚାପୁଡ଼ା ବସେଇଦେଇ ପଚାରିବି .... କିଛି ନକରି ପାରିଲେ ଅନ୍ତତଃ ତାକୁ ଦେଖିବି ଟିକେ । ମାଆ ହେବାକୁ ଯାଉଥିବା ବେଳେ ସେ କେମିତି ଦିଶୁଛି !

ନାଁ, କିଛି ଦରକାର ନାହିଁ ।

ମନକୁ ଦୃଢ଼ କଲି । ବର୍ତ୍ତମାନଠାରୁ ତାକୁ ଭୁଲିଯିବା ହିଁ ଦରକାର । କ'ଣ ପାଇବି ଆଉ ତା' ସହ ସଂପର୍କ ରଖି ? ଭୁଲିଯିବି ତାକୁ ମୁଁ ! ପୁରାପୁରି ଭୁଲିଯିବି ! ଯେତିକି ହେଲା ଖୁବ ହେଲା । ଆଉ ନୁହଁ ! ତୋରଣ ଦେଖେଇଲା, ବୁଣାବୁଣି ଦେଖେଇଲା । କିମିଆ କରିଦେଲା ମୋତେ । ଅଯଥାରେ ଗୋଡ଼ ଆଗକୁ ବଢ଼େଇଲି ଯାହା !

ଗାଧୋଇ ସାରିଥିଲେ ବି ମୋତେ ଗାଧୋଇବା ପରି ଲାଗୁନଥିଲା । ମୁଁ ତା ଉପରେ ତା ଉପରେ ନୋଟା ନୋଟା କରି ପାଣି ଢ଼ାଳୁଥିଲି ଦେହ ମୁଣ୍ଡ ସବୁଆଡ଼େ ।

'ଲଖୋବା –' ମୁଁ ଧୀର କରି ତାକୁ ଡାକ ମାରିଲି ।

'ହଁ –'

'ଆରେ, ତା'ର କୁଆଡ଼େ କ'ଣ ହେବ ?'

'କିଏ ? କାହାର ?'

'ସେଇ କଲ୍ୟାଣୀ ଝିଅର !'

'କେଜାଣି, ହେଇଥିଲେ ହେଇଥିବ । ମୁଁ କେମିତି ଜାଣିବି ?'

ହଁ, ହୋଇଥାଉ କି ନ ହୋଇ ଥାଉ – ସେଥିରେ ଲଖୋବାର କ'ଣ ଅଛି ? ତା' ପାଖରେ ସବୁ ସମାନ !

ଗାଧୋଇ ସାରି ମୁଁ ମାମୁଁଙ୍କ ସହିତ ଖାଇବା ପାଇଁ ବସିଲି । ବିନା ଗୋଟିଏ ଶବ୍ଦର ବିନିମୟରେ ଆମ ଦୁହିଁଙ୍କ ଖାଇବା ସରିଗଲା । ଖାଇସାରି ହାତଧୋଇ ମୁଁ ବାହାର ପିଣ୍ଡାକୁ ଆସି ବସିଲି ।

ମାମୁଁ ହାତରେ କୋଦାଳଟିଏ ଧରି କାମ କରିବାପାଇଁ ବାହାରିଲେ । ଯାଉ ଯାଉ କହିଗଲେ, 'ଶୋଇପଡ଼, ଉଠିଲେ ମନ୍ଦିରକୁ ଯିବୁ ହୁକୁମ ପାଇଁ । ମୁଁ ନାରାୟଣ ନନାଙ୍କୁ କହିଦେଉଛି ଏଇନା ।'

ସେଇ ଖରାରେ ଖରାରେ ସେ ବାହାରିଗଲେ ।

ମୁଁ ଡରୁଥିଲି, ଠାକୁରଙ୍କ ପାଖରୁ କେଉଁ ବିଷୟରେ ହୁକୁମ ଆଣିବି ? ଯଦି ମାମୁଁ ପଚାରିନ୍ତି କ'ଣ କହିବି ? ମାମୁଁ କିନ୍ତୁ କିଛି ପଚାରିଲେ ନାହିଁ ।

*

ସଂଧ୍ୟାବେଳେ ମୁଁ ମନ୍ଦିରକୁ ଯିବାପାଇଁ ବାହାରିଲି । ପ୍ରକୃତରେ କିନ୍ତୁ ମନ୍ଦିରକୁ ଯିବାପାଇଁ ମୋର ଆଦୌ ଇଚ୍ଛା ନଥିଲା । କଲ୍ୟାଣୀର ଘରବାଟ ଦେଇ ଯିବାର ହିଁ ନଥିଲା । କୌଣସି କଥା ପାଇଁ ହୁକୁମ ଆଣିବାର ବି ନଥିଲା । ଦୁଇମାସ ପୂର୍ବରୁ ଠାକୁରଙ୍କୁ ପ୍ରଶ୍ନ କରିଥିଲି । ବାହାଘର ବିଷୟରେ ଠାକୁରଙ୍କ ନାସ୍ତିବାଚକ ଉତ୍ତର ଥିଲା । ତାଙ୍କ କଥା ବି ଠିକ ହେଲା । ଏବେ ତ ମୋ ମନରେ ଆଉ କୌଣସି ପ୍ରଶ୍ନ ନଥିଲା । ମନ୍ଦିରକୁ ଯିବାର ହିଁ ନଥିଲା । କୌଣସି ପ୍ରକାରେ ରାତିଟା କାଟିଦେଇ ସକାଳୁ ଯାଇ ବନ୍ଦରରେ ପହଞ୍ଚିଗଲେ ହେଲା । କିନ୍ତୁ ମନ୍ଦିର ଏଇନା ମୋତେ ଯିବାକୁ ହିଁ ପଡ଼ିବ । ମାମୁଁ ଯାଇ ନାରାୟଣ ନନାଙ୍କୁ କହି ଦେଇଥିବେ ମୁଁ ଠାକୁରଙ୍କୁ ପ୍ରଶ୍ନ କରିବାକୁ ଆସିବି ବୋଲି । ସଂଧ୍ୟାବେଳେ ପୁଣି ଯାଇ ବୁଝିବେ ତାଙ୍କଠାରୁ ଉତ୍ତର ହଁ କି ନାହିଁ ହେଲା, ସେ ବିଷୟରେ । ତେଣୁ ଏଇନା ମୁଁ ମନ୍ଦିର ଯିବାପାଇଁ ବାଧ୍ୟ ।

ମାଈଁ କହିଲେ, 'କୋଉ ବିଷୟ ପଚାରିବୁ କିରେ ?'

'ନାଗପୁରର ଚାକିରୀ ବିଷୟରେ ପଚାରିବି । ସେଠିକି ଗଲେ ଭଲ ହେବ କି ନାହିଁ ।'

ଏଇ କଥା ପଚାରିବାକୁ ତୁ ଏତେ ପଇସା ଖର୍ଚ୍ଚ କରି, ଏତେ କଷ୍ଟ କରି ଏତେ ବାଟ ଆସିଲୁ ? ଗୋଟିଏ ପୋଷ୍ଟକାର୍ଡ଼ରେ ଲେଖି ପକେଇ ଦେଇଥିଲେ ତୋ ମାମୁଁ ଠାକୁରଙ୍କ ପାଖରୁ ଆଣି ତତେ ଜଣେଇ ଦେଇ ଥାଆନ୍ତେ ।'

ମୁଁ କିଛି କହିଲିନି ।

ମନ୍ଦିର ଗଲି । ନାରାୟଣ ନନା ମୋତେ ଅପେକ୍ଷା କରିଥିଲେ । ମୋ ହାତରେ ଚରଣାମୃତ ଦେଲେ । ମୁଁ ଠାକୁରଙ୍କୁ ପ୍ରଣାମ କଲି । ନନା ପତ୍ରର ଟୁକୁଡ଼ା କରି ପାଣିରେ ବୁଡ଼େଇ ଠାକୁରଙ୍କ ଛାତିରେ ଲଗାଇଲେ । ତାପରେ ମୋତେ ପଚାରିଲେ,

'କେଉଁ ବିଷୟରେ ପ୍ରଶ୍ନ କରିବୁ ?'

'ମନରେ ଗୋଟିଏ କଥା ଭାବିଛି । କରିବି କି ନାହିଁ ?'

ମୁଁ ହାତଯୋଡ଼ି ବସିଲି । ନନା ତାଙ୍କର ମନ୍ତ୍ର ଆରମ୍ଭ କଲେ । ମନେ ମନେ ମୋତେ ହସ ଲାଗୁଥିଲା । କାରଣ ମୋ ମନରେ ଆଉ କୌଣସି ପ୍ରଶ୍ନ ନଥିଲା । ଠାକୁରଙ୍କ ପାଖରୁ କୌଣସି ଉତ୍ତରର କାମନା ମଧ୍ୟ ନଥିଲା । କ'ଣ ଆଉ ମୋ ପାଖରେ ଅବଶିଷ୍ଟ ଥିଲା ଯେ ଠାକୁର ମୋତେ ଉତ୍ତର ଦେଇଥାଆନ୍ତେ !

ପତ୍ର ଗୋଟିଏ ତଳେ ପଡ଼ିଲା ଭଳି ଲାଗିଲା ।

'ଆରେ ବାବୁଲ, ତୋ ମନ ମୁତାବକ କାମ ହେବ । ବହୁତ ଭଲ ଉତ୍ତର ମିଳିଛି ।' ନାରାୟଣ ନନା କହିଲେ ।

ମନ ମୁତାବକ ହେବ । ଭଲ ଉତ୍ତର ମିଳିଛି ! ଏ ଶବ୍ଦ ସେ ମନ୍ଦିର ଭିତରେ ପ୍ରତିଧ୍ୱନୀତ ହୋଇ ମିଳେଇଗଲା । ନନା ଗୋଟିଏ କାଗଜରେ ବିଭୂତି ଗୁଡ଼େଇ ମୋ ହାତକୁ ଦେଲେ । ସେ ପୁଡ଼ିଆଟିକୁ ପକେଟରେ ରଖି ମୁଁ ବାହାରେ, ମୁଖଶାଳାରେ ଆସି ବସିଲି । କାରଣ ସେଠି କିଛି ସମୟ ବସିବାର ନିୟମ ଥିଲା ।

କଲ୍ୟାଣୀ କୁଆଡୁ ଆସି ପହଞ୍ଚିଗଲା ସେଠି । କହିଲା, 'କ'ଣ ଆଠଦିନ ଖଣ୍ଡେ ରହିବୁ ତ ?'

'କାହିଁକି ? କ'ଣ ପାଇଁ ?'

ମୋର ଏ ଅଡୁଆ ପ୍ରଶ୍ନ କଲ୍ୟାଣୀକୁ ଆହୁରି ଅଡୁଆରେ ପକେଇଦେଲା । କିଛି ସମୟ ଯାଏ ସେ କିଛି ଉତ୍ତର ନଦେଇ ସେମିତି ଚୁପରହିଲା । ମୁହଁ ତଳକୁ କରିଥିଲେ ବି କଣେଇ କଣେଇ ମୋତେ ଚାହୁଁଥିଲା । ମୋର ଲକ୍ଷ୍ୟ ଠିକ ଥିଲା ।

କିଛି ସମୟ ପରେ ଗମ୍ଭୀର ହୋଇ କହିଲା, 'ଯାହା ହେଲା, ସବୁ କ'ଣ ମୁଁ କଲି ? ଠାକୁର କଲେ, ମୁଁ କିଏ କରିବା ପାଇଁ? ଠାକୁରଙ୍କ ଇଚ୍ଛାରେ ଯାହା ବି ହେଲା ସବୁ ତୋରି ମଙ୍ଗଳ ପାଇଁ । ଏକଥା ଯେମିତି ଭୁଲି ନଯାଉ । ସବୁ ତୋର କଲ୍ୟାଣ ହେବା ପାଇଁ । ସେ ପୋଡ଼ାମୁହିଁ ମାନୁର ପ୍ରକୃତି ହିଁ ଏମିତି ! ସମସ୍ତଙ୍କ ପାଇଁ ତା ମନରେ ମାୟା । କିନ୍ତୁ ଦେବଦାସୀ ଜୀବନରେ ଲୋକଙ୍କ ପାଇଁ ଏତେ ମାୟା କ'ଣ ତିଷ୍ଠି ପାରିବ ? ଦୁନିଆରେ ଚଳିବ କେମିତି ଏତେ ମାୟା ରଖି ? ଦି' ଅକ୍ଷର ପଢ଼ାଲେଖା ଶିଖିଛି । ସେତିକି ତା' ପାଇଁ ଯଥେଷ୍ଟ । ଆମେ ଦେବଦାସୀ ହେଲୁ ଠାକୁରଙ୍କ ପତ୍ନୀ । ଦେବଦାସୀର ବିବାହ ହେଲେ ମଙ୍ଗଳ ହେବ କି ?'

କହୁ କହୁ ହଠାତ କଲ୍ୟାଣୀର ଗଳା ଭାରି ହୋଇ ଆସିଲା । ତା' ପାଟିରୁ କଥା ବାହାରିଲାନି । ଆଖିରେ ଜମା ହୋଇ ଯାଇଥିବା ଲୁହକୁ ଲୁଚେଇବାପାଇଁ ସେ ଛାତ ଆଡ଼କୁ ଚାହିଁଲା । କ୍ଷଣକ ପାଇଁ ଆଖିପତା ତା'ର ବନ୍ଦ ହୋଇଗଲା । ଦୁଇ ପାଖରେ ଦୁଇ ଧାର ଲୁହ ତଳକୁ ଗଡ଼ି ଆସିଲା ।

'ଆମ ଆଖି ଆଗରେ ଘଟିଥିବା କଥା ସବୁ କହୁଛି । ଯମୁନାକୁ ଚନ୍ଦ୍ରିକା ବାହାଘର କରିଦେଲା । ଝିଅ ଜ୍ୱାଇଁ ଦୁହିଁଙ୍କର ଭାଗ୍ୟ ପୋଡ଼ିଗଲା । ଭାଇ ଭଉଜଙ୍କ କଥା ବି ସେମିତି । ସାରା ଦେହ କେମିତି ଫୁଲିଗଲା । ପ୍ରତ୍ୟକ୍ଷ ଠାକୁର ପରା ! ଆଖି ଆଗରେ ହିଁ ଠାକୁର ପାପୀକୁ ଉପଯୁକ୍ତ ଶିକ୍ଷା ଦେଇଦେବେ । ମୋ ଝିଅ ପାଇଁ ମୁଁ ତୋର ଅକଲ୍ୟାଣ ହେବାପାଇଁ କେବେ ବି ଚାହିଁବିନି । ଆମେ ମଶାଣିକୁ ଗଲେ ଚଳିବ । ଆମ ଜୀବନ ତ ଏମିତି ! ତୁ ଭଲରେ ରହ । ତୋର ବାହାଘର ହେଉ, ଘର ସଂସାର ହେଉ ! ତୁ ଭଲରେ ରହିଲେ ଆମକୁ ଭଲ ଲାଗିବ । ତୋ ମାମୁଁଙ୍କ ହାତରୁ ଆମକୁ ଖୋରାକି ମିଳୁଛି । ତାଙ୍କରି ଦାନା ଖାଇ ଆମ ଜୀବନ ରହିଛି... ଆମେ ବଞ୍ଚିଛୁ...'

କଲ୍ୟାଣୀର କଣ୍ଠରୁଦ୍ଧ ହୋଇ ଆସିଲା । ନିଜକୁ ସମ୍ଭାଳିବାକୁ ସେ ଖୁବ ଚେଷ୍ଟା କରୁଥିଲା । ଆଖିରେ ଲୁହ ଟଳମଳ ହେଉଥିଲେ ବି କାନ୍ଦକୁ ଚାପି ରଖିଥିଲା । ତା'ର ଏ ଅବସ୍ଥା ଦେଖି ମୋର ତା' ଉପରେ ରାଗ ଆଉ ଆସୁ ନଥିଲା । ବରଂ ଦୟା ଆସୁଥିଲା ।

'ବାବୁଲ, ଆରେ ସବୁ ତୋରି କଲ୍ୟାଣ ପାଇଁ କହିଲି । ରାଗିବୁନି । କିଛି ଖରାପ ବି ଭାବିବୁନି ।'

କଲ୍ୟାଣୀର ଏତିକି କଥାରେ ମୋ ଆଖିରେ ଲୁହ ଟଳମଳ ହୋଇଗଲା ।

'କାହିଁକି ଏତେ ମନ ଦୁଃଖ କରୁଛୁ ? ସବୁ ଆମ ଭାଗ୍ୟ ।'

କଲ୍ୟାଣୀ ଆଉ ଧୈର୍ଯ୍ୟ ଧରିପାରିଲାନି । ଲୁଗାକାନିକୁ ମୁହଁରେ ଦେଇ କାନ୍ଦିବାକୁ ଲାଗିଲା ।

ମୁଁ ବି ତାକୁ ଆଉ କିଛି କହିଲିନି । କିଛି କହିବା ଅବସ୍ଥାରେ ବି ମୁଁ ନଥିଲି । କଣ୍ଠ ରୁଦ୍ଧ ହୋଇଯାଇଥିଲା ।

ସେମିତି ଅବସ୍ଥାରେ ସେଠୁ ଉଠିଆସି ଚପଲ ପିନ୍ଧି ବାହାରକୁ ଆସିଲି । କିଛି ଦୂର ଗଲାପରେ ବୁଲି ଚାହିଁଲି । କାନ୍ଥକୁ ଡେ଼ରି ହୋଇ ଛିଡ଼ାହୋଇ କଲ୍ୟାଣୀ ମୋରି ଆଡ଼କୁ ଲକ୍ଷ୍ୟ କରି ଅନେଇ ରହିଥିଲା ।

ସାରା ରାତି ଆଖି ଖୋଲା କରି ସେମିତି ଚାହିଁ ଚାହିଁ ବିଛଣାରେ ପଡ଼ିଥିଲି ମୁଁ । ମୁଣ୍ଡ ଭିତରେ କେତେ କ'ଣ ଭାବନା ସବୁ ଚାଲିଥିଲା ଯେ ତାର ଠିକଣା ନାହିଁ । ଗୋଟାଏ ଅଦ୍ଭୁତ ଅବସ୍ଥାରେ ଥିଲି ମୁଁ । କଲ୍ୟାଣୀ କିମ୍ବା ମାନୁ କାହା ଉପରେ ବି ମୋର ରାଗ ନଥିଲା ମନରେ । ନିଜର ଭାଗ୍ୟ କଥା ଭାବି ଦୁଃଖ ଲାଗୁଥିଲା । ରହିରହି ମନରେ ଗୋଟିଏ ଖିଆଲ ହିଁ ଆସୁଥିଲା । ଦୀପାବଳୀ ଛୁଟୀରେ ମୁଁ ଯଦି ଏଠିକୁ ଆସି ନଥାନ୍ତି ମହାନନ୍ଦା ସହ ମୋର ଦେଖା ବି ହୋଇନଥାନ୍ତା । ତା ଉପରେ ଏତେ ମାୟା ଆସି ନଥାନ୍ତା କି ମୁଁ ଏମିତି ଫାସରେ ପଡ଼ି ନଥାନ୍ତି । କେତେବର୍ଷ ପରେ ମାମୁଁଘରକୁ ଆସିଥିଲି । କାହିଁକି ଆସିଲି ? କାହିଁକି ଏମିତି ଏଠିକି ଆସିବାପାଇଁ ପ୍ରବଳ ଇଚ୍ଛା ହେଲା ? ସବୁ ଠାକୁରଙ୍କ ଖେଳ । ଏଠିକି ନ ଆସିଥିଲେ ବି ହୁଏତ ମୁଁ ଅନ୍ୟ କେଉଁ ପରିସ୍ଥିତିରେ ଅନ୍ୟ କେଉଁ ଝିଅର ପ୍ରେମରେ ପଡ଼ିଯାଇ ଥାଆନ୍ତି ! ସେଠି ବି ଯେ ଏମିତି ପରିସ୍ଥିତି ନ ହୋଇଥାନ୍ତା ସେକଥା କିଏ କହିବ ? ଠାକୁରଙ୍କ ଉପରେ ସବୁ ଛାଡ଼ି ଦେଲି । ଯାହା ହେଲା ହେଲା । ଏବେ ସେ ସବୁ ଭୁଲିଗଲେ ଭଲ ।

ଆଉ ଚାରିଦିନ ରହିବାପାଇଁ ମାଇଁ ଖୁବ୍ ବାଧ କରୁଥିଲେ । ମୁଁ ତ ରହିଥାନ୍ତି ମୋ ମନକୁ ମନ । ବାଧ କରିବା ବି ଦରକାର ନଥିଲା । ଦୀପାବଳୀରେ ଆସି ଯାତ୍ରା ପର୍ଯ୍ୟନ୍ତ ରହିଗଲି । ସେତେବେଳେ ମୋତେ କିଏ ବାଧ କରିଥିଲା ? ଏବେ କିନ୍ତୁ ଆଉ ସେ ଗାଁରେ ରହିବା ମୋ ପକ୍ଷେ ସମ୍ଭବ ନଥିଲା । ସେଠି ଆଉ ମୁହୂର୍ତ୍ତଟିଏ ବି ରହିବାକୁ ଇଚ୍ଛା ହେଉ ନଥିଲା । ଥରେ ଏଠୁ ବାହାରିଗଲେ ଚିରଦିନ ପାଇଁ ବିଦାୟ ନେଇ ଚାଲିଯିବାର ଥିଲା । ଭବିଷ୍ୟତରେ ଏଠିକୁ ଆଉ ଆସିବାର ପ୍ରଶ୍ନ ବି ନଥିଲା । ଏ ଗାଁ, ଗାଁର ସ୍ମୃତି, ସବୁ ଭୁଲିଯିବାକୁ ହେବ !

ପରଦିନ ସକାଳେ ଲଖୋବାର ଗାଡ଼ି ଯୋଚା ହୋଇଗଲା । ମାଇଁ ହାତରେ ଗୋଟିଏ ଚାମଚ ଚିନି ନେଇ ମୋ ମୁହଁରେ ଦେଲେ । କିନ୍ତୁ ମୋ ମୁହଁ ଆଉ ମିଠା ହେବା ବହୁତ କଷ୍ଟକର ଥିଲା ।

'ବାବୁଲ, ନାଗପୁର କେବେ ଯିବୁ ?' ମାଇଁ ପଚାରିଲେ ।

'ଖୁବ୍ ଶୀଘ୍ର ।'

'ଖାଇବା ପିଇବା ଏଥର ତାହେଲେ ବାହାରେ ହେବ ଆଉ ।'

'ହଁ ।'

'ଆରେ, ଭଲ ଝିଅ ଦେଖ୍ ଏଥର ବାହା ହୋଇ ପଡ଼ । ଆମ ଭଳିଆ ମୋଟେ ଦରକାର ନାହିଁ ।'

ମୁଁ ହସିଦେଲି । ଗାଡ଼ିରେ ବସୁଥିଲି, ମାଈଁ ହଠାତ୍ ପଚାରିଲେ, 'ପୁଣି କେବେ ଆସିବୁ ?'

'ଦେଖିବା ।'

ମାଈଁ ହଠାତ୍ ସେଠୁ ବୁଲିପଡ଼ି ଘର ଭିତରକୁ ପଶିଗଲେ । କାରଣ ସାମ୍ନାରେ ମାମୁଁ ଗୁହାଳଘରୁ ବାହାରି ଆସୁଥିଲେ ।

ନମସ୍କାର କରି ମାମୁଁଙ୍କୁ କହିଲି, 'ଆସୁଛି ।'

'ହଉ ।'

ସବୁଦିନ ଧରି ଛୋଟିଆ ଉତ୍ତରଟିଏ ଦେଇ ମାମୁଁ ବଳଦଙ୍କ ପିଠି ଆଉଁସି ଦେଲେ । ଭବିଷ୍ୟତରେ ମୁଁ ଯେ ଆଉ କେବେ ଏଠି ପାଦ ପକେଇବିନି ଏ କଥା ସେ ଭୁଲରେ ସୁଦ୍ଧା କଳ୍ପନା କରିନଥିବେ ।

ଗାଡ଼ି ଚାଲିଲା ।

ଲଖୋବା ପାଞ୍ଚଣ ଧରି ବସିଥିଲା । ମୁଁ ତା'ପଛପଟରେ ବସିଥିଲି । ଶଗଡ଼ ଧୀରେ ଧୀରେ ଚାଲିଥିଲା । ବଳଦଙ୍କ ବେକରେ ଥିବା ପିତଳ ଘଣ୍ଟି ଟୁଂଟାଂ ହୋଇ ଗୋଟିଏ ଛନ୍ଦରେ ବାଜୁଥିଲା । ସେ ଶବ୍ଦ ଶୁଣି ମନ ଭିତରଟା କୋରି ହୋଇଗଲା । ଗାଡ଼ି ଯେତିକି ଆଗକୁ ଆଗକୁ ଚାଲିଥିଲା ଗାଁ ସେତିକି ପଛ ହୋଇ ଯାଉଥିଲା । ଦୁଲାଙ୍ଗୀର ଗୁଡ଼ିଆ ଦୋକାନ ଗଲା । ପ୍ରାଥମିକ ସ୍କୁଲ୍‌ରେ ପଢ଼ିବାବେଳେ ଦୁଇବର୍ଷ ମୋର ଏଇ ଗାଁ ସ୍କୁଲ୍‌ରେ ବିତିଥିଲା । ସେତେବେଳେ ଏଇ ଦୁଲାଙ୍ଗୀ ଗୁଡ଼ିଆ ଦୋକାନରେ ପକୁଡ଼ି, ମୁଡ଼ିମୁଆଁ ଇତ୍ୟାଦି ମୋର ଅତି ପ୍ରିୟ ଥିଲା । ଏବେ ଆଉ ସେ ଦେଖାଯାଉନି । କ୍ଷଣକପାଇଁ ଭାବିଲି ଓହ୍ଲେଇ ଯାଇ ପକୁଡ଼ି ଓ ଲଡୁ କିଣି ଖାଇଲେ ହୁଅନ୍ତା । ଶେଷଥର ପାଇଁ ପ୍ରିୟ ଦୋକାନର ଜିନିଷ ପାଟିରେ ପକେଇ ଚାଲି ଯାଆନ୍ତି । କିନ୍ତୁ ପାଟିର ସୁଆଦ ବି ଆଉ ନଥିଲା ।

ବୁଢ଼ା ବରଗଛ ପଛରେ ରହିଗଲା । ଯମୁନାର ବର ସେଇ ପାଗଳ ଲୋକଟି ସେଠି ବିଡ଼ି ଟାଣେ । ପିଲାଦିନେ ଏଇ ବରଗଛ ଓହଳରେ ଝୁଲି ଦୋଳି ଖେଳୁଥିଲୁ । ପରୀକ୍ଷାରେ ପାସ କରିବାପାଇଁ ମନେ ମନେ ଠାକୁରଙ୍କୁ ଡାକି ଏଠି ମିଶ୍ରି ପୁଡ଼ିଆ ରଖି ଦୀପ ଜାଳୁଥିଲୁ । କେବେ ବି ଆଉ ଏ ଗଛ ଆଖି ଆଗକୁ ଆସିବନି ! ସବୁ ଭୁଲିଯିବାକୁ

ହେବ । ରାସ୍ତାକଡ଼ରେ ଥିବା ଘାସ ଉପରେ କାକର ଟୋପା ସବୁ ପଡ଼ିଥିଲା । ସକାଳର ସୂର୍ଯ୍ୟ କିରଣ ତା' ଉପରେ ପଡ଼ି ଝଲମଲ ହେଉଥିଲା । ରାସ୍ତାକଡ଼ ଖାଲ ଭିତରେ, ପୋଖରୀରେ କେଉଟଙ୍କ ଜାଲ ପଡ଼ିଥିଲା । ସକାଳର କଅଁଳ ଖରା ଚାରିଆଡ଼କୁ ବିଛାଡ଼ି ହୋଇ ପଡ଼ିଥିଲା । କାକର ବିନ୍ଦୁ ସବୁ ଆଖିର ଲୁହ ହୋଇ ଗାଲ ଉପର ଦେଇ ତଳକୁ ଗଡ଼ି ପଡୁଥିଲା । ଅଳ୍ପ ଅଳ୍ପ ଦୂରରେ ଥିବା ଆମ୍ବଗଛ ସବୁ ନିଜ ନିଜ ଭିତରେ ଛନ୍ଦାଛନ୍ଦି ହୋଇ ଗଲାପରି ଦିଶୁଥିଲେ । ମଝିରେ ମଝିରେ ଜାମୁଗଛର ଡାଳସବୁ ହାତର ପଞ୍ଝା ଭଳି ଦିଶୁଥିଲା ।

ସବୁଆଡ଼େ ମୋର କରୁଣ ଦୃଷ୍ଟି ପଡୁଥିଲା । କାରଣ ଏ ସବୁ ଯା ପରେ ଆଉ କେବେବି ଦିଶିବନି ମୋତେ । ବଳଦଙ୍କ ଗଳାର ଘଣ୍ଟି ଗଳା ଖଡ଼ ଖଡ଼ ହେଲାପରି ବାଜୁଥିଲା । ଗାଡ଼ି ଆସି ମନ୍ଦିର ପାଖାପାଖି ହୋଇଯିବାରୁ ଲଖୋବା କହିଲା, 'ଗାଡ଼ି ରଖିବି ?'

'କାହିଁକି ?'

'ମାନୁକୁ ଭେଟକରି ..... ।'

'ମାନୁ କେଉଁଠି ଅଛି ଏଇନେ ?'

ମୁଁ ଇଆଡ଼େ ସିଆଡ଼େ ଏପାଖ ସେପାଖ ହୋଇ ଅନେଇଲି ।

'ଯାଇ ପଚାରି ଆସିବି କି ସେ ଆସିଲାଣି କି ନାହିଁ ବୋଲି ?'

'ନାଁ, ଥାଉ, କିଛି ଦରକାର ନାହିଁ ।' ମୁଁ ଏକ ପ୍ରକାର ବିରକ୍ତିର ସହ କହିଲି ।

ଗାଡ଼ି ଘଣ୍ଟିର ଟୁଂଟାଂ ଶବ୍ଦ ସହ ଚାଲିଥିଲା ।

ଟିକିଏ ଆଗକୁ ଯିବା ପରେ କଲ୍ୟାଣୀର ଘର ଦିଶିଲା । ପୋଷ୍ଟମାଷ୍ଟର ସୋମାଜୀ ଅଗଣାରେ ଛିଡ଼ା ହୋଇଥିଲା । ତୁଳସୀ ଚଉରାପାଖରେ ଚିକିମିକି କାଚ ଓ ଜରି ଲଗା କନାଟିଏ ପିଠି ଉପରେ ପଡ଼ି ସଜା ହୋଇଥିବା ବଳଦ ଯିଏ ଆଗତ-ଭବିଷ୍ୟତ କଥା ମୁଣ୍ଡ ହଲାଇ ହଁ ନାହିଁ କରି ଜଣେଇ ଦେଉଥିଲା । ସେଇଠି ପାଖରେ ଢୋଲ ବଜେଇବା ଲୋକଟି ରହିରହି ତା' ଢୋଲଟିକୁ ବଜେଇ ଦଉଥିଲା । ଏ ଘରର ସବୁ ମଙ୍ଗଳ ବୋଲି ଢୋଲ ବଜାଉଥିବା ଲୋକଟି ବୁଝେଇ କହୁଥିଲା ।

କଲ୍ୟାଣୀ କେଉଁଠି ଦିଶିଲା ନାହିଁ । ନ ଦିଶୁ । ଉଭେଇ ଗଲା କି ଆଉ ?

'କେତେ ଦିନ ରହିବ ବୋଲି ପଚାରୁଥିଲା –' ଲଖୋବା ପଛକୁ ବୁଲିପଡ଼ି କହିଲା ।

'କିଏ ?'

'ଏ ସୋମାଜୀ ମାଷ୍ଟର !'

'ସେ କାହିଁକି ପଚାରୁଥିଲା ?'

' ଏମିତି ଖାଲିଟାରେ, ସାରା ଗାଁର ଖବର ତା ପାଖରେ ।'

ଗାଡ଼ି ଚାଲିଥିଲା । ଗାଡ଼ି ସହିତ ତାଳଦେଇ ମୋ ଦେହଟା ବି ହଲୁଥିଲା ।

ଶଗଡ଼ର ଗୋଟିଏ କଡ଼କୁ କେତେବେଳେ ଆଉଜି ଯାଇଥିଲି ଆଉ ମୋ ଆଖି ଲାଗିଯାଇଥିଲା, ଜାଣି ପାରିଲିନି । ବନ୍ଦରରେ ପହଞ୍ଚିବା ପର୍ଯ୍ୟନ୍ତ ଶୋଇଥିଲି ।

*

ବୋଟ୍ ଆସି ବନ୍ଦରରେ ଲାଗିଥିଲା ।

ଲୋକଙ୍କର ପାଟିତୁଣ୍ଡ ଶୁଭୁଥିଲା । ଡଙ୍ଗାରେ ଜିନିଷ ପତ୍ର ଚଢ଼ାଇବା ସହ ଲୋକମାନେ ନିଜେ ବି ଚଢୁଥିଲେ । ମୁଁ ଶଗଡ଼ରୁ ଓହ୍ଲେଇ ଡଙ୍ଗାକୁ ଯିବା ଆଗରୁ ବଳଦ ଦୁଇଟିଙ୍କ ପିଠି ଆଉଁସି ଦେଲି । ତାଙ୍କ ଆଖିରେ ବି ଲୁହ ଦେଖି ମୋ ମନ ଭିତର ଛଟପଟ ହୋଇଗଲା ।

ଲଖୋବାର ପୁରା ଲକ୍ଷ୍ୟ ମୋ ଉପରେ ଥିଲା । ସେମିତି ଚୁପ୍ ହୋଇ ସେ ଛିଡ଼ା ହୋଇଥିଲା । ପ୍ରଥମଥର ପାଇଁ ତାକୁ ଏତେ ଗଭୀର ଚିନ୍ତାରେ ବୁଡ଼ିଥିବାର ଲକ୍ଷ୍ୟ କରୁଥିଲି । ଦଶଟଙ୍କିଆ ନୋଟ ଖଣ୍ଡେ ତା ପକେଟରେ ମୁଁ ଗୁଞ୍ଜି ଦେଲି ।

'ଏଥର ଆସିବ ଆମ୍ବ ପଣସ ଖାଇଲା ବେଳକୁ !'

'ହଁ ।'

'ଖାଲି ହଁ କହିଦେଲେ ଚଳିବନି । ଯିବା ଆସିବା ଚାଲୁଥିବା ଦରକାର । ଯେମିତି ବନ୍ଦ ନ ହୁଏ । ଏଠି ଯଦି କେତେବେଳେ କଣ ହୋଇଗଲା....'

'ଏଠି - ମାନେ ?'

'ଏଠି ମାନେ ମନ୍ଦିରରେ । ସବୁକଥା ଭୁଲିଯିବ । ଆସିବ ନିଶ୍ଚୟ । ମନେ ରହିଲା ତ !'

ଲଖୋବାର ବୁଝିବା ଶକ୍ତି ଦେଖି ମୁଁ ଭିତରେ ଆଶ୍ଚର୍ଯ୍ୟ ହେଉଥିଲି । ଭାଙ୍ଗି ପଡୁଥିଲି ବି । ମୁଁ ଯେ ଆଉ ଏଠିକୁ ଆସିବିନି ସେ କଥା କେବଳ ଏଇ ଏକମାତ୍ର ଲଖୋବା ହିଁ ଲକ୍ଷ୍ୟ କରି ପାରିଥିଲା ।

'ହଉ ।' ତାକୁ ଶାନ୍ତ କରିବାପାଇଁ କହିଲି ।

ପାହାଡ଼ ଉପରର ଧୋବଫରଫର ସେଇ ବଙ୍ଗଳାଟି ଉପରକୁ ଆଖି ଚାଲିଗଲା ଆପେ ଆପେ ।

ଲଖୋବା ନଇଁପଡ଼ି ଓଳଗି ହେଲା ମୋତେ ।

ମୋର କୋହ ଉଠିବାଟା ହିଁ ବାକି ଥିଲା କେବଳ । କିନ୍ତୁ ସମ୍ଭାଳି ନେଲି ନିଜକୁ । ଜନ୍ମହେଲା କେଉଁଠି, ସାରା ଜୀବନ କଟେଇଲା କେଉଁଠି ଏଇ ଲଖୋବା ! ସୋମବତୀର ଯାତ୍ରା ଦେଖିବା ପାଇଁ ଆସିଥିଲା । ସେତେବେଳେ ଅଳ୍ପ ବୟସ ହୋଇଥିଲା ତା'ର । ମାମୁଁଙ୍କ ପାଖରେ ରହିଲା । ରହିଗଲା ସେଠି ସବୁଦିନ ପାଇଁ । ସେଇଠି ବଢ଼ିଲା । ମାମୁଁ ତା'ର ବାହାଘର ଠିକ କରିବାରୁ ଲୁଚି ଲୁଚି ଘର ଛାଡ଼ି ପଳେଇଲା । ଏ ବୟସରେ ସ୍ତ୍ରୀ ନିଶା ଲାଗିଛି । ତା' ପେଜପାଣି କଥା ବୁଝିବ ଲଖୋବା । କିନ୍ତୁ ସେ ସ୍ତ୍ରୀ ଲୋକଟିର ଶେଯର ମାଲିକ ଅନ୍ୟ କେହି । ତଥାପି ବି ଲଖୋବା ସେଇ ସ୍ତ୍ରୀଲୋକଟିର ପରମ ବିଶ୍ୱାସୀ । ତାରି ମାୟାରେ ଲାଖି ଯାଇଛି । ମାମୁଁଙ୍କ ପ୍ରତି, ଆମ ପ୍ରତି ତା'ର କେତେ ଆପଣାର ଭାବ ! ସବୁ ଠାକୁରଙ୍କ ଖେଳ । କିଏ କାହାକୁ କେଉଁ ଭଳି ବାନ୍ଧି ରଖୁଛି ଆଉ କାହାକୁ କେତେବେଳେ ମୁକୁଳା କରୁଛି ସେ କଥା କେହି ଜାଣିପାରିବେନି ।

ବୋଟ୍ ଉପରକୁ ଉଠିଲି । ପୁଙ୍ଗାର ଆବାଜରେ କାନ ଥରିଗଲା । ସଂପୂର୍ଣ୍ଣ ବାତାବରଣ ଥରି ଉଠିଲା । ବନ୍ଦର ଉପରେ ବଳଦ ତଳକୁ ମୁହଁ କରି ଘାସ ଚରୁଥିଲେ । ପାହାଡ଼ ତଳ ଆଡ଼େ ପଡ଼ିଥିବା ଗୋଟିଏ ବଡ଼ ପଥର ଉପରକୁ ଚଢ଼ିଯାଇ ଲଖୋବା ତା' ଗାମୁଛା ତ ନୁହେଁ, ଠେକାଟି ଖୋଲିଦେଇ ହଲଉଥିଲା । ତାକୁ ମୁଁ ଦେଖା ଯାଉନଥିବି । କିନ୍ତୁ ମୋତେ ତା' ଠେକା ହଲେଇବା ଦେଖାଯିବ ନିଶ୍ଚୟ ବୋଲି ଭାବୁଥିଲା ।

ପାହାଡ଼ ଉପରର ବଙ୍ଗଳାଟି କୁହୁଡ଼ିରେ ଘୋଡ଼େଇ ହେଲା ପରି ଦିଶୁଥିଲା ।

ସାମନାରେ ଫେଣ ଉଡ଼େଇ ଚନ୍ଦ୍ରାବତୀ ବୋଟ୍ ଚାଲିଥିଲା । ଦୂରର ଧୂସର ବିନ୍ଦୁଟି ଆହୁରି ଧୂସର ଦେଖାଯାଉଥିଲା । ଛାତି ଭିତରଟା କ'ଣ ଯେମିତି ହୋଇଯାଉଥିଲା । ମନ ପୋଡ଼ି ଯାଉଥିଲା ।

ଆଖିରେ ଲୁହ ଟଳମଳ ହେଉଥିଲା ।

ହଲୁଥିବା ବୋଟ୍ ଉପରୁ ପାହାଡ଼ ଉପର ବଙ୍ଗଳା ବି ହଜିଗଲା ପରି ଦିଶୁଥିଲା ।

ମୁଁ ସେଇଆକୁ ଚାହିଁ ରହିଥିଲି ।

* *

# ଚାରି

ନାଗପୁର ଯିବାର ଖୁସିରେ ମନ କେମିତି ପାଗଳ ହେଉଥିଲା । ଭବିଷ୍ୟତ କେବଳ ସ୍ୱପ୍ନମୟ ଦିଶୁଥିଲା । କେତେ ରଙ୍ଗୀନ କଳ୍ପନାରେ ମନ ଉଚ୍ଛନ୍ନ ହୋଇ ଯାଉଥିଲା । କିନ୍ତୁ ଇଏ ହେଲା କ'ଣ । ପିଲାଙ୍କର ବାଲିଘରଭଳି ସବୁ ସ୍ୱପ୍ନ ଗୋଟିଏ ଧକ୍କାରେ ଭାଙ୍ଗି ଚୁରମାର ହୋଇ ପଡ଼ିଲା । କାହାର ଅସ୍ଥି ବିସର୍ଜନ କରିବା ପାଇଁ ଗଲାଭଳି ମୁଁ ନାଗପୁରରେ ଯାଇ ପହଞ୍ଚିଥିଲି । ଅନ୍ତତଃ ମୁମ୍ବାଇରୁ ମୁଁ ଦୂରକୁ ଯାଇଥିଲି, ସେତିକି ସାନ୍ତ୍ୱନା ଥିଲେ ଅନେକ ଲୋକଙ୍କ ପ୍ରଶ୍ନର ଅନେକ ପ୍ରକାରର ଆଶଙ୍କା ତଥା ସନ୍ଦେହର ଦୃଷ୍ଟିରେ ଲୋକେ ମୋ ଆଡ଼କୁ ଚାହିଁବାର ସମ୍ଭାବନା ଥିଲା । ଆଗର ସେ ତେଜ କୁଆଡ଼େ ହଜିଯାଇଥିଲା । ଜୀବନଟା ଛାରଖାର ହୋଇଗଲା । ପାଚିଲା ଦାଢ଼ୀରେ ବୁଢ଼ା ସବୁ ଯେମିତି ଆକର୍ଷଣହୀନ ଶ୍ରୀହୀନ ଦେଖା ଯାଆନ୍ତି ମୋ ଚେହେରା ମୋତେ ସେମିତି ପ୍ରାଣହୀନ ଓ ନିର୍ଜୀବ ଦିଶୁଥିଲା । କୌଣସି କଥା ପାଇଁ ଏତେ ଟିକେ ଆଗ୍ରହ ଆଉ ମୋର ନଥିଲା ।

ଟିପ୍‌ଟପ ଡ୍ରେସ୍ ହୋଇ କଲେଜ ଯିବାର ସଉକ ମୋର ଆଉ ନଥିଲା । ପାଟିର ସୁଆଦ କହିଲେ କିଛି ନଥିଲା । ଏଇଟା ଖାଇବି ସେଇଟା ଖାଇବି ବୋଲି ଆଗରୁ ମନରେ ଯେଉଁ ଆଗ୍ରହ ଥିଲା ସେ ସବୁ କୁଆଡ଼େ ଚାଲିଯାଇଥିଲା । ତା' ସହିତ ଆରମ୍ଭ ହୋଇଥିଲା ହୋଟେଲରେ ଖାଇବା । ଖୁବ୍ କମ୍ ଦିନ ଭିତରେ ଓଜନ ବି କମିବା ଆରମ୍ଭ ହୋଇଗଲା । ସବୁବେଳେ ନିସ୍ତେଜ ଲାଗିଲା । କାମ କରିବାକୁ ଆଦୌ ଇଚ୍ଛା ଆଗ୍ରହ ରହିଲାନି । ଆଗର ସବୁ ଡ୍ରେସ୍ ଏବେ ଢ଼ିଲା ହେଉଥିଲା । ସ୍ୱଭାବ ବି ଖୁବ ଚିଡ଼ିଚିଡ଼ା ହୋଇଗଲା । ଆସ୍ତେ ଆସ୍ତେ ମୋର ସାଙ୍ଗସାଥିଙ୍କ ସଂଖ୍ୟା ବି କମ ହେବାକୁ ଲାଗିଲା । କେଉଁଠାରେ ଚାରିଜଣ ବସି ମନଖୁସିରେ ଗପସପ କରୁଥିଲେ ମୋର ସେଠିକୁ ଯାଇ ସେମାନଙ୍କ ସହ ମିଶି ବସିବା ପାଇଁ ଇଚ୍ଛା ହେଉନଥିଲା । ବରଂ ସମସ୍ତଙ୍କ ପାଖରୁ ଦୂରେଇଯାଇ ଏକଲା ହୋଇ କେଉଁଠି

ନିରୋଳାରେ ରହିଲେ ମୋତେ ଭଲ ଲାଗୁଥିଲା । ପ୍ରତିଦିନ କଲେଜ ଯାଇ ନିୟମିତ କ୍ଲାସ କଲାବେଳକୁ ବି ମୁଁ ଥକି ଯାଉଥିଲି । ମୋ ପାଇଁ ଏଭଳି ଦୁଇଟା ଯାଗା ଅବଶିଷ୍ଟ ଥିଲା । ଗୋଟିଏ ହେଲା କଲେଜ କାମ ସରିଗଲା ପରେ ଘରକୁ ଫେରି କବାଟ କିଳି ଏକୁଟିଆ ପଡ଼ିରହିବା । ଆଉଟି ହେଲା ଘରେ ବସି ବିରକ୍ତ ଲାଗିଲେ ମହାରାଜବାଗକୁ ଯାଇ ଚୁପଚାପ ହୋଇ କିଛି ସମୟଯାଏ ବସିରହିବା । ସିଏ ବି ଗୋଟିଏ ନିର୍ଦ୍ଦିଷ୍ଟ ଗଛ ମୂଳରେ । ଏମିତି ନିଃସଙ୍ଗ ଜୀବନ ମୋର ଗଡ଼ି ଚାଲିଲା ।

ମୋର ଏ ପ୍ରକାର ସ୍ୱଭାବ ପାଇଁ ଗୋଟିଏ କଲେଜରେ ବେଶୀ ଦିନ ରହିବା ମୋ ପକ୍ଷରେ କଷ୍ଟକର ହେଉଥିଲା । ତେଣୁ ପରବର୍ତ୍ତୀ ସତର ଅଠର ବର୍ଷ ଭିତରେ ମୁଁ ପ୍ରାୟ ଛଅଟି କଲେଜକୁ ବଦଳି ହୋଇଥିଲି । ନାଗପୁର, ଓ୍ୱାର୍ଦ୍ଧା, ଅମରାବତୀ ପ୍ରଭୃତି ସ୍ଥାନରେ କିଛି କିଛି ବର୍ଷ ରହିଥିଲି । ଗୋଟିଏ ପରେ ଗୋଟିଏ ଯାଗାକୁ ଯାଉଥିଲି । ତା ସହିତ ବର୍ଷ ପରେ ବର୍ଷ ନୂଆ ଘର ଖୋଜିବା, ନୂଆ ହୋଟେଲ ଦେଖିବା; ନୂଆ ଧୋବାକୁ ଖୋଜି ଡାକିବା ଏଇ ସବୁ ଆସ୍ତେ ଆସ୍ତେ ଅଭ୍ୟାସରେ ପଡ଼ିଗଲା । ତେଣୁ ଚାରି ବର୍ଷ ପରେ ଗୋଟିଏ ନୂଆ ଯାଗାକୁ ଗଲାବେଳେ ବିରକ୍ତି ନ ଲାଗି ଏଥର ଭଲ ଲାଗୁଥିଲା ।

ଆରମ୍ଭରେ ଯାହା ସବୁ ଘଟିଗଲା ତାକୁ ଭୁଲିବା ପାଇଁ କଷ୍ଟ ହେଉଥିଲା । ଅନ୍ଧାର ହୋଇଗଲା ପରେ ଘର ଭିତରେ ବତୀ ନ ଲଗାଇ ଛାତକୁ ଅନେଇ ଶୋଇ ରହୁଥିଲି । ମଝିରେ ମଝିରେ ବହୁତ ଜୋରରେ କାନ୍ଦିବାକୁ ଇଛା ହେଉଥିଲା । ବେଳେ ବେଳେ କାନ୍ଦୁଥିଲି ବି । ଆତ୍ମହତ୍ୟା କରିବାକୁ ବି ଇଛା ହେଉଥିଲା । କେତେଦିନ ମୋର ଏମିତି ମନଃସ୍ଥିତିରେ କଟିଗଲା ।

ମନର ସ୍ଥିରତା ଆଉ ଫେରିଲା ନାହିଁ । କୌଣସି ପ୍ରକାରେ ମନ ଶାନ୍ତ ଲାଗୁ ନଥିଲା । ଆଗରୁ ଏମିତି ଅନୁଭୂତି ମୋର ନଥିଲା । ପ୍ରଥମେ ପ୍ରଥମେ ଅଧିକାଂଶ ସମୟରେ ମନରେ ଖିଆଲ ଆସୁଥିଲା - ଏ ଅବସ୍ଥାରେ ମାନୁକୁ ବାହା ହୋଇଗଲେ କ୍ଷତି କ'ଣ ଅଛି ? ଲୋକେ ତ ପୁଣି ବିଧବା ବିବାହ କରୁଛନ୍ତି । ମାନୁର ଗର୍ଭରେ ବଢୁଥିବା ସନ୍ତାନ ଯାହାର ହୋଇଥାଉ ପଛେ, ତାକୁ ନିଜର ବୋଲି ସ୍ୱୀକାର କରିନେଲେ, ପ୍ରଥମେ କିଛିଦିନ ଅବଶ୍ୟ ଅଡୁଆ ଲାଗିବ, କିନ୍ତୁ ଧୀରେ ଧୀରେ ସବୁ ସ୍ୱାଭାବିକ ହୋଇଯିବ । ଏମିତି ଭାବିବା କେବଳ ସାର ହେଉଥିଲା । ବାରମ୍ବାର ଏମିତି ଭାବୁଥିଲେ ବି କାର୍ଯ୍ୟରେ ଦେଖେଇ ଦେବାର ସାହସ ହେଉ ନଥିଲା କି

କ'ଣ ମୁଁ ଜାଣିପାରୁ ନଥିଲି । ସାହସ କହିଲେ ହୁଏତ ଭୁଲ ହେବ, ସତସାହସ ବୋଧେ ନଥିଲା । ତେଣୁ ଆସ୍ତେ ଆସ୍ତେ ସେ ପ୍ରକାର ଚିନ୍ତାଧାରା ମନ ଭିତରୁ ମିଳେଇଗଲା ପରି ହୋଇଥିଲା ।

ବେଳେବେଳେ ଅବଶ୍ୟ ତା' ପାଇଁ ମୋର ଏମିତି ଝୁରିହେବାକୁ ମନେମନେ ନିଜକୁ ନିଜେ ମୁଁ ପ୍ରଶଂସା କରୁଥିଲି । ଯାହା ହେଲେବି ମନ ଭିତରେ ଏ ବଡ଼ପଣ ଅଛି ବୋଲି ନିଜ ପ୍ରତି ଗର୍ବ ଆସୁଥିଲା । କାହାପାଇଁ ତ ଜୀବନକୁ ଆହୂତି ଦେଇ ଦେଇଛି – ଏଇ ଆତ୍ମସନ୍ତୋଷ ଆସୁଥିଲା ଅନ୍ତରର ନିଭୃତ କୋଣରୁ ।

ମଝିରେ କିଛିଦିନ ଭାବିଲି ଗାନ୍ଧିଜୀଙ୍କ ଆନ୍ଦୋଳନରେ ଯୋଗଦେଇ ଯାଇ ଜେଲରେ ରହିବି । ମନେ ମନେ ସେଥିପାଇଁ ଦୃଢ଼ସଙ୍କଳ୍ପ ନେଲି ମଧ୍ୟ । କିନ୍ତୁ ସେତିକିବେଳେ ଆନ୍ଦୋଳନ ବନ୍ଦ ହୋଇଗଲା । ତା'ର ତିନିଚାରି ବର୍ଷ ପରେ ମହାଯୁଦ୍ଧ ଆରମ୍ଭ ହୋଇଗଲା । ସେତେବେଳେ ସୈନ୍ୟ ବିଭାଗରେ ଭର୍ତ୍ତି ହୋଇଯିବା ପାଇଁ ଇଚ୍ଛା ହେଲା । ଯେମିତି ହେଲେ ବି କୁଆଡ଼େ ଦୂର ଯାଗାକୁ ଚାଲିଯିବାକୁ ଖୁବ୍ ମନ ହେଉଥିଲା । ବ୍ରିଟିଶ ମାନଙ୍କ ପ୍ରତି ଈର୍ଷା ନାହିଁ କି ତାଙ୍କ ଶତ୍ରୁ ପ୍ରତି ଦ୍ୱେଷ ମଧ୍ୟ ନାହିଁ – ଏଇ ମନଃସ୍ଥିତି ଥିଲା ମୋର । ସେମାନେ ଯୁଆଡ଼େ ବି ନେବେ ମୁଁ ଯିବାପାଇଁ ପ୍ରସ୍ତୁତ ହୋଇଥିଲି । କାହାକୁ ଗୁଳିମାରିବା କିମ୍ୱା କାହା ଗୁଳି ଆସି ନିଜ ଛାତିରେ ପଶିବା ଏ ଦୁଇଟି ଯାକ କଥା ମୁଁ କିଛି ଚିନ୍ତା କରୁ ନଥିଲି । ସେଥିପାଇଁ ମୋର ଖାତିର ବି ନଥିଲା । ସେମିତି ଶୀତଳ ମୃତ୍ୟୁ ବରଂ ମୋର କାମ୍ୟ ଥିଲା । ମୃତ୍ୟୁପରର ସଂସ୍କାର ପାଇଁ କାହାର ଦାୟିତ୍ୱ ନଥିବ ଆଉ । ଶବ କେଉଁ ପଙ୍କରେ ପଡ଼ିଲା କି ବରଫ ପାହାଡ଼ ତଳେ ପୋତି ହୋଇ ରହିଲା, ସେ ଖବର ଦେବାପାଇଁ ବି କେହି ଲୋକ ନଥିବେ ।

ଶେଷରେ ନିଷ୍ପତ୍ତି ଦୃଢ଼ କରି ଦରଖାସ୍ତ ଦେଇଦେଲି । ସୈନ୍ୟବିଭାଗରୁ ଡାକରା ଆସିଲା । କିନ୍ତୁ ଡାକ୍ତରୀ ପରୀକ୍ଷା ବେଳେ ମୋର କିଛି ରୋଗ ଥିବାର ଜଣାପଡ଼ିଲା । ସେତେବେଳେ ମୁଁ ଜଇଗାଁଓରେ ରହୁଥିଲି । ସାମ୍ନାରେ ଚୌବେ ନାମକ ଜଣେ ଭଦ୍ରଲୋକ ତାଙ୍କ ପରିବାର ସହ ରହୁଥିଲେ । ଔଷଧପତ୍ର, ପଥ୍ୟ ଇତ୍ୟାଦି ସବୁକିଛିର ବ୍ୟବସ୍ଥା ସେଇମାନେ ହିଁ କଲେ । ସେ ରୋଗରୁ ମୋତେ ମୁକ୍ତ କଲେ । ତାଙ୍କ ପତ୍ନୀ ଖୁବ ମେହାପୀ ଥିଲେ । ମୋତେ ନିଜ ସାନ ଭାଇ ପରି ଦେଖୁଥିଲେ, ସ୍ନେହଶ୍ରଦ୍ଧା କରୁଥିଲେ । କିଛିଦିନ ପରେ ତାଙ୍କ ଝିଅର ନାମକରଣ ଉତ୍ସବ ହେଲା । ନାମ ଦେବାର

ଅଧିକାର ମାମୁଁର । କିନ୍ତୁ ମୋତେ ସେ ଅଧିକାର ସେ ଦେଇଥିଲେ । କିଛି ନଭାବି ମୋ ପାଟିରୁ ବାହାରିଗଲା – ମହାନନ୍ଦା । ସ୍ୱାମୀ ସ୍ତ୍ରୀ ଦୁହେଁ ନାଁଟିକୁ ଖୁବ ପସନ୍ଦ କଲେ । ମୁଁ କିନ୍ତୁ ତାକୁ ଡାକୁଥିଲି 'ମାନୁ' ।

ସେଇ ପରିବାରଟି ପାଇଁ ମୋର ମଧ୍ୟ ଖୁବ୍ ପରିବର୍ତ୍ତନ ହେଲା ସ୍ୱଭାବରେ । ଆଉ ହୋଟେଲରେ ଖାଉନଥିଲି । ତାଙ୍କରି ଘରୁ ମୋ ପାଇଁ ଖାଇବା ଆସୁଥିଲା । ତାଙ୍କ ପରିବାର ଭିତରେ ମୁଁ ଗୋଟିଏ ସଦସ୍ୟ ହୋଇ ଯାଇଥିଲି ଯେମିତି । ମୋ ଭଲମନ୍ଦ ସେମାନେ ସବୁ ବୁଝୁଥିଲେ । ମାନୁ ମୋରି କୋଳରେ କାଖରେ ବଢ଼ି ବଡ଼ ହେଉଥିଲା । କିନ୍ତୁ ମନ ଭିତରେ ବସା ବାନ୍ଧିଥିବା ଚଢ଼େଇଟି ଉଡ଼ି ଦୂରକୁ ଯାଇ ପାରୁନଥିଲା । ଅକାଳେ ସକାଳେ ବଜାର ଘାଟରେ ଅବୋଲୀ ଫୁଲର ମାଳ ଉପରେ ଅକସ୍ମାତ ଆଖି ପଡ଼ିଗଲେ ବି ପଛକଥା ମନେ ପଡ଼ିଯାଏ । ଛାତି ଭିତରଟା ଥରିଯାଏ । କେବେ ଚୌବଳ ଅପା କୁରେଇ ଫୁଲ କଢ଼ ଆଣି ଗଜରା କରିବା ପାଇଁ ବସିଯାଆନ୍ତି ତାଙ୍କ ବାରଣ୍ଡାରେ । ସେ ବାସ୍ନାରେ ମୋ ଅନ୍ତର ମଜ୍ଜି ହୋଇଯାଏ । ସେ ଦିନ ରାତିସାରା ଆଖିରେ ପଲକ ପଡ଼େନି । ପୁରୁଣା ଦିନର ସ୍ମୃତି ସବୁ ଜୀବନ୍ତ ହୋଇ ଚାଲିଆସନ୍ତି ଆଖି ଆଗକୁ । କିନ୍ତୁ ଆଖିରୁ ଲୁହ ଆଉ ଝରେନି । ସବୁ ତ ଶୁଖିଯାଇଛି କେଉଁ କାଳରୁ ।

ସଂଧ୍ୟାବେଳେ ଟିକେ ବୁଲିଆସିବା ପାଇଁ ଘରୁ ବାହାରି ଗଲେ ରାସ୍ତାରେ କେତେ ସ୍ତ୍ରୀଲୋକ ନଅଗଜ ଶାଢ଼ୀ ପିନ୍ଧି ରାସ୍ତାରେ ଯିବା ଆସିବା କରିବାର ଦେଖାଯାଆନ୍ତି । ନଅଗଜ ଶାଢ଼ୀରେ କାହାକୁ କୋଥ ପିନ୍ଧିଥିବାର ଦେଖିଲେ ମୋର ଗତି ସ୍ଥିର ହୋଇପଡ଼େ । ମୁଁ ସେଇ ସ୍ତ୍ରୀ ଲୋକଟିର ପଛେ ପଛେ ଚାଲେ । ଯାତ୍ରାଦିନର ସ୍ମୃତି ସବୁ ପୁଣି ଆଖିଆଗକୁ ଚାଲିଆସେ । ମନଟା ଉଡ଼ନ୍ତ ବିକଳ ହୋଇପଡ଼େ ।

ମାଆ ପ୍ରଥମେ ତ ପଛରେ ପଡ଼ିଯାଇଥିଲା । ବାହା ହୋ, ବାହା ହୋ – ବୋଲି ଚବିଶଘଣ୍ଟା ଲଗେଇଥିଲା । ଅତି ସ୍ୱାଭାବିକ । ପୁଅକୁ ଏମିତି ଏକେଲା ଦେଖିବା ପାଇଁ କୋଉ ମାଆ ଚାହିଁବ କି ! ବାରମ୍ବାର ଚିଠି ଲେଖୁଥିଲା – 'ବାବୁଲ, ତୋର ଯେଉଁଠି ଯେଉଁ ଝିଅକୁ ଇଚ୍ଛା ହଉଛି ବାହା ହୋ । ତୋ ପସନ୍ଦ ହିଁ ମୋ ପସନ୍ଦ । ବାହାହୋଇ ଘରସଂସାର କର । ଏମିତି ଜୀବନଟା ତିଳ ତିଳ କରି ନଷ୍ଟ କରନା ।'

କାହାଠାରୁ କ'ଣ ଶୁଣିଲା କେଜାଣି ସିଧା ଆସି ଥରେ ପହଞ୍ଚିଗଲା ମୋ

ପାଖରେ । ସେତେବେଳେ ମୁଁ ଥିଲି ଢଳଗାଁରେ । କହିଲା, 'ବାବୁଲ, ଏମିତି ପାଗଳଙ୍କ ପରି କାହିଁକି ହଉଛୁ ?'

'କ'ଣ, ମୁଁ ତ କିଛି କରିନି ।'

'ତୁ ତାକୁ ବାହା ହୋ !'

'କାହାକୁ ?'

'କଲ୍ୟାଣୀର ଝିଅକୁ ! ହଉପଛେ ସେ ଦେବଦାସୀର ଝିଅ !'

'ମୁଁ ମୋତେ ବାହା ହେବିନି । ତାକୁ କି ଆଉ କାହାକୁ ।'

ମୁଁ ଚିଡ଼ିଯାଇ କହିଲି । ସେ ବି ମୋ ଚିଡ଼ା ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସତକଥା କ'ଣ ସେ ବୁଝିପାରିଲାନି । କିଛି ଜାଣି ପାରିଲାନି । ମାନୁକୁ ମୁଁ ଭଲ ପାଉଥିଲି, ତାକୁ କେବଳ ଏତିକି ଜଣା ଥିଲା । ମୁଁ ଲାଗ ଲାଗ ଦୁଇଥର ମାମୁଁ ଘରକୁ ଯାଇଥିଲି । ତେଣୁ ମାନୁ ସହିତ ମୋର କିଛି ସଂପର୍କ ରହିଥିବ ବୋଲି ସେ ବିଶ୍ୱାସ କରି ଯାଇଥିଲା । କିନ୍ତୁ ତା' ପରର କଥା ତାକୁ କ'ଣ ଜଣାଥିଲା ? କେମିତି ବା ଜାଣିବ ସିଏ ?

ମୋ ଉତ୍ତର ଶୁଣି ମାଆ ଅଡୁଆରେ ପଡ଼ିଗଲା । କ'ଣ କରିବ କିଛି ବୁଝିପାରିଲାନି ବୋଧେ । ମୋ ପାଖରେ ଦୁଇଦିନ ରହିଲା । ତା'ପରେ ମୁମ୍ବାଇ ଫେରିଗଲା ।

ମୋର କିନ୍ତୁ ସେଥିରେ କୌଣସି ପ୍ରତିକ୍ରିୟା ନଥିଲା ।

ମଝିରେ ମଝିରେ ଗୋଟିଏ ଗୋଟିଏ ଅଧ୍ୟାୟ ଚାଲିଗଲା ଏମିତି । ଜୀବନଟାକୁ ଠେଲି ଠେଲି ମୁଁ ବି ଚାଲୁଥିଲି ମୋ ବାଟରେ । ମୋର ନିତିଦିନିଆ ରୁଟିନ ଲାଇଫ ହୋଇଯାଇଥିଲା । ଭୋରରୁ ଉଠି କିଛି ବାଟ ବୁଲିଆସୁଥିଲି । ଦିନରେ ତିନି ଚାରି ଘଣ୍ଟା କଲେଜରେ କ୍ଲାସ ନେଇ କଟିଯାଉଥିଲା । କଲେଜରୁ ଫେରିଲା ପରେ ଘରେ ବିଶ୍ରାମ ନେଉଥିଲି । କେବେ କେବେ ବାହାର ଲନରେ ଚେୟାର ଖଣ୍ଡେ ପକେଇ ଦେଇ ବସି ବିବେକାନନ୍ଦଙ୍କ ବହି ପଢୁଥିଲି । ମାନୁ ବି ଟିକେ ବଡ଼ ହୋଇ ଯାଇଥିଲା । କେବେକେବେ ତା ସାଥିରେ ଖେଳୁଥିଲି । ଏଇ ଥିଲା ମୋର ଦିନଚର୍ଯ୍ୟା ।

ମଝିରେ ମଝିରେ ମାମୁଁଙ୍କ ଖବର ବି ମିଳୁଥିଲା । ମୋତେ ପୋଷ୍ୟପୁତ୍ର କରିବାପାଇଁ ତାଙ୍କର ଚେଷ୍ଟା ଚାଲିଥିଲା । ମୁଁ ପୁଅ ହୋଇ ତାଙ୍କ ଘରେ ରହିବି । ତାଙ୍କ ସଂପୂର୍ଣ୍ଣ ସଂପତ୍ତିର ଉତ୍ତରାଧିକାରୀ ହେବି – ମାମୁଁ ଏଇୟା ଭାବୁଥିଲେ । ମୋ ବାହାଘର ପାଇଁ ସେ ବି ବହୁତ ଚେଷ୍ଟାକଲେ । ମାନୁ ସହିତ ମୋର ଯାହା ସବୁ

ହୋଇଯାଇଥିଲା ସେସବୁ କଥା ସେ କଲ୍ୟାଣୀଠାରୁ ଜାଣିଥିବେ କି ଜାଣି ନଥିବେ, ସେ ବିଷୟରେ ମୁଁ ଜାଣିନଥିଲି । ଜାଣିଥିଲେ ହୁଏତ କହିଥାଆନ୍ତେ – 'ବାହାହୋଇ ଘରେ ରହ । ମାନୁ ପାଖକୁ ବି ଯିବାଆସିବା କର ।' ମୋ ବାହାଘର କରି ଦେବାପାଇଁ ତାଙ୍କର ପ୍ରବଳ ଆଗ୍ରହ ଥିଲା । କାରଣ ମୋ ପରେ ପୁଣି ମୋ ପୁଅବି ତାଙ୍କ ସଂପତ୍ତିର ଦେଖାଶୁଣା କରିଥାଆନ୍ତା, ଭୋଗ କରିଥାଆନ୍ତା ।

ମାମୁଁ ଚିଠି ଉପରେ ଚିଠି ଲେଖୁଥିଲେ । ମୁଁ ବାହାହୋଇ ଯାଇ ତାଙ୍କ ପାଖରେ ରହିବି ବୋଲି ଠାକୁରଙ୍କଠାରୁ ହୁକୁମ ମଧ୍ୟ ପାଇସାରିଥିଲେ । ଏକଥା ସେ ମୋତେ ଚିଠିରେ ଲେଖି ଜଣେଇଥିଲେ । କିନ୍ତୁ ମୁଁ ତାଙ୍କର ସେ ଫାନ୍ଦରେ ଆଉ ପଡ଼ିବାପାଇଁ ଚାହୁଁନଥିଲି । ମାମୁଁଙ୍କ କଥା ରଖିବାପାଇଁ ଯଦି ମୁଁ ବାହା ହୋଇଥାଆନ୍ତି ମୋ ସ୍ତ୍ରୀର ଅବସ୍ଥା ବି ବୋଧହୁଏ ମାଇଁଙ୍କ ପରି ହୋଇଥାଆନ୍ତା । ରାତିରେ ଅକାଳେ ସକାଳେ ଉଠି ପିଣ୍ଡାରେ ପଡ଼ିଥିବା ବିଛଣାକୁ ଦେଖିଥାଆନ୍ତା ଆଉ ଖାଲି ବିଛଣା ଦେଖି ଭିତରେ ଭିତରେ ଜଳି ପୋଡ଼ି ମରୁଥାଆନ୍ତା ! ନାଁ ! ଏ ଜନ୍ମରେ ଆଉ କାହାର ସାନ୍ନିଧ ମୋ ପାଇଁ ଲୋଡ଼ା ନାହିଁ !

ମୋ ବୟସ ଚାଳିଶ ଟପିଲାପରେ ମାମୁଁ ତାଙ୍କ ଜିଦ୍‌ବି ବାଧ ହୋଇ ଛାଡ଼ିଲେ । ମନେ ମନେ ମୋ ଉପରେ ରାଗିଥିବେ ନିଶ୍ଚୟ । କାରଣ ତା' ପରେ ମୁଁ ଆଉ ତାଙ୍କଠାରୁ ଚିଠି ପାଇ ନଥିଲି ।

ସେଇ ତିନି ଚାରିବର୍ଷ ଭିତରେ ମୁଁ ଅସମୟ ବାର୍ଦ୍ଧକ୍ୟରେ ପହଞ୍ଚି ଯାଇଥିଲି । ମୁଣ୍ଡରେ ଗୋଟିଏ ବାଳ ବି ଆଉ କଳା ନଥିଲା । ପାଚି ଝୋଟ ଭଳି ଧଳା ହୋଇ ଯାଇଥିଲା । ଦାନ୍ତରୋଗ ସକାଶେ ସବୁଯାକ ଦାନ୍ତ ଉପାଡ଼ି ଦେବାକୁ ପଡ଼ିଲା । ଥରେ ହାଲ୍‌କା ହାର୍ଟ ଆଟାକ ବି ହୋଇ ସାରିଥିଲା । ଆସ୍ତେ ଆସ୍ତେ ମୁଁ ଦୁର୍ବଳ ବି ହୋଇ ପଡୁଥିଲି । ବେଶୀବାଟ ଚାଲିବା, ଛାତ ଉପରକୁ ଚଢ଼ିବା – ସବୁ ବନ୍ଦ ହେଲା ।

ହଠାତ ଦିନେ ମାଆଠାରୁ ଚିଠି ଆସି ପହଞ୍ଚିଲା । ହାର୍ଟ ଆଟାକରେ ମାମୁଁଙ୍କର ମୃତ୍ୟୁ ହୋଇଯାଇଛି । ମାଇଁଙ୍କୁ ଯାଇ ଭେଟ କରିଆସିବାକୁ ସେ ଲେଖିଥିଲା । ମାଇଁଙ୍କର ମୋତେ ଦେଖିବା ପାଇଁ ଯେ ପ୍ରବଳ ଇଚ୍ଛା ହଉଥିବ, ଏକଥା ମୁଁ ଭଲଭାବେ ଜାଣିଥିଲି ।

* *

# ପାଞ୍ଚ

ଅଠର ଉଣେଇଶ ବର୍ଷ ପରେ ବୋଧେ ମୁଁ ମାମୁଁ ଘରକୁ ଯାଉଥିଲି ଆଜି ।

ହୋଲି ପାଇଁ ଦୁଇଦିନ ଛୁଟୀ ଥିଲା । ତା ସହିତ ଆଉ ଦୁଇ ତିନି ଦିନ ଛୁଟି ନେଇ ବାହାରି ପଡ଼ିଲି ।

ବୋଟ୍ ଯାଇ ବନ୍ଦରରେ ଲାଗିଲା । ଘଣ୍ଟା ବାଜି ଉଠିଲା ନିଜର ଉପସ୍ଥିତିକୁ ଜଣେଇ ଦେବାପାଇଁ । ସାରା ବାତାବରଣ ଥରିଗଲା ସେ ଶବ୍ଦରେ । ଦୂର ଜିନିଷ ଦେଖିବା ପାଇଁ ଅନ୍ୟ ଚଷମାଟି ବାହାର କରି ପିନ୍ଧିଲି । ଦୃଷ୍ଟିଶକ୍ତି ବି ଏବେ ମୋର କମ ହୋଇ ଆସିଥିଲା । ତେଣୁ ଡାକବଙ୍ଗଳା ସ୍ପଷ୍ଟ ଦିଶିଲା ନାହିଁ । କୁହୁଡ଼ିମଳ ଆଖିରେ ଦୂର ଜିନିଷ ସବୁ ଯେମିତି ଝାପସା ଦେଖାଯାଏ ସେମିତି ଦିଶିଲା । ଛିଡ଼ା ହେବାପାଇଁ ବି କଷ୍ଟ ଲାଗୁଥିଲା । ତେଣୁ ବେଞ୍ଚ ଉପରେ ବସି ପଡ଼ିଲି ଏବଂ ଏକ ଲକ୍ଷ୍ୟରେ ବଙ୍ଗଳା ଆଡ଼କୁ ଅନେଇ ରହିଲି । ଛାତିରେ ଗୋଟାଏ ଅଦ୍ଭୁତ ପ୍ରକାରର ସ୍ପନ୍ଦନ ହେଲା । ଭୟ ଲାଗିଲା ମୋତେ ! ଭାବିଲି ଭାଗ୍ୟବିଧାତା ମୋ ପାଇଁ କ'ଣ ଲେଖିଛନ୍ତି କେଜାଣି ! ସେଇ ବଙ୍ଗଳାକୁ ଅନେଇ ଅନେଇ ଆଉ ଜୀବନଟା ଚାଲି ଯିବନି ତ !

ଚଷମା କାଢ଼ି ପକେଟରେ ରଖିଦେଲି । ବଙ୍ଗଳା ବି ଆଖି ଆଗରୁ ଅଦୃଶ୍ୟ ହୋଇଗଲା । ଖରାଦିନ ପାଇଁ ପାହାଡ଼ର ସବୁଜିମା ଉଭେଇ ଯାଇଥିଲା । ସବୁଆଡ଼ ଶୁଖିଲାଧୂସର ଦିଶୁଥିଲା । ଯେମିତି ପ୍ରାଣହୀନ । ଲାଲମାଟି ହିଁ ବହଳ ହୋଇ ଦିଶୁଥିଲା । ଚଷମା କାଢ଼ିଦେଲା ପରେ ମୋ ସାମ୍ନାରେ କେବଳ ନାଲିରଙ୍ଗର ପାହାଡ଼ ହିଁ ଥିଲା ।

ଡଙ୍ଗାରେ ବସି କୂଳକୁ ଆସିଲି ।

ସେଇଠି ସାମ୍ନାରେ ଛିଡ଼ାହୋଇଥିଲେ ବି ଲଖୋବା ମୋତେ ଚିହ୍ନିନପାରି ଭିଡ଼ ଭିତରେ ମୋତେ ଖୋଜୁଥିଲା ।

'ଲଖୋବା...' ମୁଁ ଧୀରେ ଡାକ ମାରିଲି ।

ଜାଣି ଜାଣି ଯେ ଧୀର କରି ଡାକିଥିଲି ସେ କଥା ନୁହଁ । ହାର୍ଟ ଆଟାକ

ହେଲା ପରେ ଦେହରେ ଆଉ ଶକ୍ତି ନଥିଲା ପରି ହୋଇଯାଇଥିଲା । କଥାବାର୍ତ୍ତାରେ, କାମରେ ଚାଲିରେ, ସବୁଥିରେ ମନ୍ଥରତା ଆସିଯାଇଥିଲା ।

'ବାବୁ...ବାବୁ...' କହି ଲଖୋବା ମୋତେ କୁଣ୍ଢେଇ ପକେଇଲା । ଭୋ ଭୋ ହୋଇ କାନ୍ଦୁଥିଲା ସେ, ଛୋଟପିଲାଟିଏ ପରି । ବନ୍ଦରରେ ଥିବା ଅନ୍ୟ ଲୋକମାନେ ଆମ ଦୁହିଁଙ୍କୁ ଚାହୁଁଥିଲେ । ତଥାପି ବି ତା'ର କାନ୍ଦ ବନ୍ଦ ହେଉ ନଥିଲା । ତା' ଦେହରେ ଆଉ କିଛି ନଥିଲା ଏବେ । ଖାଲି ହାଡ଼ ଚାରିଖଣ୍ଡ ପଡ଼ିଥିଲା ଯାହା । ସାରା ଦେହ ଥରୁଥିଲା ତା'ର । ମୋ କାନ୍ଧ ଉପରେ ମୁଣ୍ଡ ରଖି କାନ୍ଦୁଥିଲା ବିକଳ ହୋଇ ।

'ଥାଉ... କାନ୍ଦନା ଆଉ... ଚୁପ ହ...!'

ଦୁଇ ତିନୋଟି ଶବ୍ଦ ମାତ୍ର । ମୁହଁରୁ ବାହାରୁ ବାହାରୁ ରୂପାନ୍ତରିତ ହୋଇଗଲା ଅନ୍ୟ ଏକ ରୂପରେ । ଜଳନ୍ତା ମହମବତୀରୁ ଠୋପା ଠୋପା ହୋଇ ତରଳ ମହମ ଗଳି ପଡ଼ିବା ଭଳି ମୋ ଆଖିରୁ ତତଲା ଲୁହ ଟପ ଟପ ହୋଇ ଗଡ଼ିପଡ଼ିଲା । ସେଇ କେଇ ଠୋପା ଲୁହ ଗଡ଼ିପଡ଼ିବା ପରେ ମନଟା କିନ୍ତୁ ଭାରି ଶାନ୍ତ ଲାଗିଲା । କେମିତି ଗୋଟାଏ ହାଲ୍‌କା ହାଲ୍‌କା ଲାଗୁଥିଲା । ବହୁତ ବର୍ଷ ପରେ ମୋ ଆଖିରେ ଆଜି ଲୁହ ଆସିଥିଲା । ତଥାପି ବି ମୁଁ ନିଜକୁ ସମ୍ଭାଳିଲି । କାରଣ ଏତେ ବର୍ଷ ଭିତରେ ନିଜକୁ ସମ୍ଭାଳିବାର ଅଭ୍ୟାସ ହୋଇଯାଇଥିଲା ମୋର । ମନ ଶାନ୍ତ କରି ନିଜକୁ ନ ସମ୍ଭାଳିଲେ ଛାତିରେ ଶେଷ ଧକ୍କା ବାଜିବାକୁ ଡେ଼ରି ନଥିଲା !

'ଗାଡ଼ି ଆଣିଛୁ ?'

'ହେତ୍...'

'ଆରେ, କାହିଁକି ?'

'ଆଉ କ'ଣ ଶଗଡ଼ଗାଡ଼ିର ଦିନ ଅଛି ?' ନିଜକୁ କହିବା ଭଳି କହୁଥିଲା ଲଖୋବା ।

'କ'ଣ, ଅସୁବିଧା କ'ଣ ହେଲା ?'

'କିଏ କୁଆଡ଼େ ଯାଉଛି ଆଉ ? ବଳଦ ବି ମରିଗଲେଣି ।' ତଳକୁ ଅନେଇ କ'ଣ ଖୋଜିଲା ପରି ହୋଇ ଲଖୋବା କହିଲା ।

ବନ୍ଦର ଉପରେ ମଟରଗାଡ଼ିର ଧାଡ଼ି ଲାଗିଥିଲା । ଭିନ୍ନ ଭିନ୍ନ ଯାଗାକୁ ଯାଉଥିବା ଗାଡ଼ି ସବୁ ଥିଲା ସେଠି । ଶଗଡ଼ଗାଡ଼ିର ଚିହ୍ନବର୍ଣ୍ଣ ଦିଶୁନଥିଲା । ଅଜାଣତରେ, ସମୟ

ସହିତ ସବୁ ସ୍ଥାନରେ ପରିବର୍ତ୍ତନ ହୁଏ । ଏ କଥା ହୃଦୟଙ୍ଗମ କଲି । ଗାଡ଼ିର କ୍ଲିନର ବ୍ୟାଗ ନେଇ ଗାଡ଼ି ଉପରେ ରଖିଲା । ଆମେ ଦୁହେଁ ଯାଇ ଗାଡ଼ି ଭିତରେ ବସିଲୁ ।

ନାଳି ଧୂଳି ଉଡ଼େଇ, ଥରକୁ ଥର ହର୍ଣ୍ଣ ବଜେଇ ମଟରଗାଡ଼ି ଚାଲିଥିଲା । ଚାପିଚୁପି ହୋଇ ବସି ଅଣନିଃଶ୍ୱାସୀ ହୋଇ ପଡୁଥିବା ଲୋକସବୁ ହସୁଥିଲେ, ନିଜ ନିଜ ଭିତରେ ଗପସପ ହେଉଥିଲେ । କିଏ କାଶୁଥିଲା, କିଏ ଛିଙ୍କୁଥିଲା, କିଏ ବି ବାନ୍ତି କରୁଥିଲା ଝରକା ବାହାରକୁ ମୁଣ୍ଡ ବାହାର କରି । ଗାଡ଼ି ସହିତ ତାଳ ଦେଇ ଲଖୋବା କିନ୍ତୁ ହଲୁଥିଲା ।

ଏତେ ବର୍ଷ ବିତିଯାଇଥିଲେ ସୁଦ୍ଧା ଦୌଡୁଥିବା ଗାଡ଼ି ଭିତରୁ ଚିହ୍ନାଜଣା ଯାଗା ସବୁ ଦିଶି ଯାଉଥିଲା । ସେଇ ଘାସବିଡ଼ା, ରାସ୍ତାକଡ଼ ଘର, ବଡ଼ ଆମ୍ବଗଛ.... ସବୁ କିଛି । ତା' ସହ ଆହୁରି ନୂଆ ନୂଆ ତିଆରି ହୋଇଥିବା ଘର ଦୋକାନ ଇତ୍ୟାଦି ...... ।

ମନ୍ଦିର ପାଖ ବୁଲାଣିରେ ଗାଡ଼ି ବୁଲିଲା ବେଳକୁ ମୁଁ ମୁହଁ ତଳକୁ କଲି । ହାତ ଆଖି ଉପରକୁ ଚାଲିଗଲା । ଛାତି ଭିତରେ କ'ଣ ଯେମିତି ଓଲଟ ପାଲଟ ହୋଇଗଲା । ଭୟ ଲାଗିଲା, ପୁଣି ଛାତିରେ ଯନ୍ତଣା ହେବନି ତ !

ଗାଡ଼ି ଛିଡ଼ା ହେଲା ପରେ ମୁଁ ଆଖିରୁ ହାତ ଉଠେଇଲି । ପୁଣି ଗାଡ଼ି ଚାଲିଲା ।

ସେ ବୁଢ଼ା ବରଗଛର ମୂଳ ଉପୁଡ଼ି ପଡ଼ିଥିଲା । ତା ଯାଗାରେ ଛୋଟ ଛୋଟ କେତେ ଗଛ ଉଠି ଯାଇଥିଲା । ଠାକୁରଙ୍କ ଗଛ । ସଂଧ୍ୟାବେଳେ କେହି ନାଁ କେହି ସେଠି ଦୀପ ଜାଳନ୍ତି । ଏବେ ଆଉ ସେମିତି ଏଠି କେହି ଦୀପ ଜାଳୁଛନ୍ତି କି ନାହିଁ କେଜାଣି । ଚନ୍ଦ୍ରିକାର ଝିଅ ଜମୁନାର ବର ପାଗଳ ହୋଇ ସବୁବେଳେ ଏଇଠି ବସି ବିଡ଼ି ଟାଣୁଥିଲା । ଆଜି କାହିଁ ସେ ଦିଶୁନଥିଲା ସେଠି । ଦୁଲାଜୀର ବରା ପିଆଜି ଦୋକାନ ବି ବନ୍ଦଥିଲା ।

ମୁଁ ଲଖୋବାକୁ ହଲେଇଲି । ତା ଆଖି ଲାଗିଯାଇଥିଲା । ଚମକି ପଡ଼ି ଆଖି ମଳି ମଳି ସେ ବାହାରକୁ ଚାହିଁଲା ।

'ଲଖୋବା, ଦୁଲାଜୀ ଦୋକାନ ଆଉ ଚାଲୁନି କି ?' ମୁଁ ହାଲ୍‌କା ଭାବରେ ପଚାରିଲି ।

'କେବେଠାରୁ! ସେଠି ପରା ଏବେ ସୋସାଇଟିର ଗୋଦାମ ହୋଇଛି ।'

ସେଇଠି ଗାଡ଼ି ରହିଲା । ଆମେ ଓହ୍ଲେଇଲୁ ।

ଆଗେ ଯେଉଁଠି ବରା, ପକୁଡ଼ି, ଲଡ୍ଡୁ, କାକରା ଇତ୍ୟାଦି ମିଳୁଥିଲା ଆଜି ସେଠି ଲୋକେ ହାତରେ କାର୍ଡ ଧରି ଲାଇନ ଲଗେଇ ଥିଲେ ରେସନ ଜିନିଷ ପାଇଁ ।

ଲଖୋବା ମୁଣ୍ଡ ଉପରେ ବ୍ୟାଗ ଥୋଇ ଚାଲିଲା । ମୁଁ ତା' ପଛେ ପଛେ । ମାମୁଁଙ୍କ ଘର ଆସିଲା । ଘରର ଅଧିକାଂଶ ଭାଗ ଭୁଷୁଡ଼ି ପଡ଼ିଥିଲା ଭଳି ଥିଲା । ବାହାର ପଟ ବାରିରେ ଶଗଡ଼ ଭଙ୍ଗାଭଙ୍ଗି ହୋଇ ଥୁଆ ହୋଇଥିଲା ।

ଲଖୋବା ଭିତରକୁ ଯାଇ ମାଈଁଙ୍କୁ କହିଲା ।

ମୁଁ ହାତଗୋଡ଼ ଧୋଇ ଘର ଭିତରକୁ ପଶିଲି ।

ଅନ୍ଧାରିଆ ମଝିଘର ଭିତରେ ସଉପଟିଏ ପକେଇ ମାଈଁ ଶୋଇଥିଲେ । କାନ୍ଦୁଥିଲେ ।

ମୁଁ ତାଙ୍କୁ ଚାହିଁ ପାରିଲିନି । ଲିପାପୋଛା ଅଗଣାରେ ପୋଛି ହୋଇଯାଇଥିବା ଚିତା ପରି ଦିଶୁଥିଲେ ସେ ।

ଲଖୋବା ବି ଗୋଟିଏ କଡ଼ରେ ଛିଡ଼ାହୋଇ କାନ୍ଦୁଥିଲା ।

ପିଢ଼ାଟିଏ ଟାଣିଆଣି ମୁଁ ଚୁପଚାପ ବସିଲି । ମନରେ କେତେ ପ୍ରକାରର ସ୍ମୃତି ଲୁଚକାଳି ଖେଳିଲା ଭଳି ଆସି ଚାଲିଯାଉଥିଲା । ନିଜକୁ ନିଜେ ମୁଁ ଶାନ୍ତ କରୁଥିଲି । ଭିତରେ ଭିତରେ ନିଜକୁ ସମ୍ଭାଳିବାକୁ ଯଥାସାଧ ଚେଷ୍ଟା କରୁଥିଲି । ଏକସଙ୍ଗରେ ଅନେକ ପ୍ରକାରର ଚିନ୍ତା ମନ ଭିତରକୁ ଆସୁଥିଲା । ମାଈଁ, ଲଖୋବା ଓ ମୁଁ – ବ୍ୟର୍ଥ ଜୀବନର ତିନୋଟି ନମୁନା ଆମେ । ବଞ୍ଚି ରହିଥିଲୁ – କିନ୍ତୁ ସେମିତି ବଞ୍ଚିବାର ଅର୍ଥ କିଛି ନଥିଲା କାହା ପାଖରେ । ତଥାପି ବି ଆମେ ବଞ୍ଚିଥିଲୁ କେବଳ ବଞ୍ଚିବାର ନାଁ ନେଇ ।

ସଂଧ୍ୟାବେଳେ ମନ୍ଦିର ଆଡ଼େ ଯିବାପାଇଁ ମନ ଛଟପଟ ହୋଇଗଲା ନିଜ ଅଜାଣତରେ । କିନ୍ତୁ ଗଲି ନାହିଁ । ଯାତ୍ରାର କ୍ଳାନ୍ତି ଥିଲା ଇ । ପାଦ ଫୁଲିଯାଇଥିଲା । ତେଣୁ ଶୋଇରହିଲି । ସାମ୍ନାରେ ମାମୁଁଙ୍କର ବହିଖାତା ରଖିବାକୁ ଛୋଟ ଡେସ୍କଟିଏ ଥିଲା । ତା'ରି ଉପରେ ଭରାଦେଇ ପଡ଼ିଥିଲି ।

ମାଈଁ ତକିଆଟିଏ ଡ଼େରି ହୋଇ ବସିଥିଲେ ।

'ବାବୁଲି, ତୁ କେମିତି ଏମିତି ବଦଳିଗଲୁରେ ?'

'କେମିତି ?'

'ଏଇ ବୟସରେ ବାଳ ସବୁ ପାଚି ଝୋଟ ହୋଇଗଲାଣି, ଦାନ୍ତ ସବୁଯାକ ପଡ଼ିଗଲାଣି ।'

'ମାଇଁ, ମୁଁ କଣ ଆଉ ଆଗର ବାବୁଲ ଅଛି ? ବୟସ ପରା ପଇଁଚାଳିଶ ହେଲାଣି ।'

'ଏତିକି ବୟସ କ'ଣ ବେଶୀ ହୋଇଗଲା ? ମୋତେ ପରା ଆସି ଏବେ ଅଡ଼ଷଠି ବର୍ଷ ହେଲାଣି ।'

'ତୁମେ ବି ଶୁଖି କଣ୍ଢା ହୋଇଗଲଣି ।'

'ମୋ କଥା ଛାଡ଼ । ମୁଁ ତ ପ୍ରଥମରୁ ହିଁ ସେମିତି ଖରାପ ।'

'ଖରାପ କ'ଣ ?'

'ଖରାପରେ ବାବା । ଖୁବ ଖରାପ । ବାହାଘର ଦିନଠାରୁ ମୁଁ କାହାରି ପସନ୍ଦ ହେଉନଥିଲି ।' ମାଇଁ ଲୁଗା କାନିରେ ଆଖି ପୋଛିଲେ । ପୁଣି ଆରମ୍ଭ କଲେ, 'ଛାଡ଼ ସେ ସବୁ । ଆମର ତ ମଶାଣିକୁ ଯିବା ସମୟ ଏବେ ପାଖ ହୋଇଗଲାଣି । ଅଇଁଠା ମଇଁଠା ଖାଇ ଜୀବନ କାଟିବା ଭାଗ୍ୟରେ ଥିଲା । ତୁ କାହିଁକି ବାହା ହେଲୁ ନାହିଁ ? ଏଇଟା ଖରାପ ହେଲା ରେ ।'

'କ'ଣ ଖରାପ ହେଲା ?'

'ଏତେ ପାଠ ପଢ଼ି -'

'ହଉ, ସେ ସବୁ କଥା ଛାଡ଼, ଆଉ କାହିଁକି ?'

'ତାଙ୍କର ବହୁତ ଇଚ୍ଛା ଥିଲା ତୁ ଏଇଠି ରହିଥାଆନ୍ତୁ -'

ମୁଁ କିଛି କହିଲିନି ।

କିଛି ଗୋଟିଏ ମନେ ପକେଇବା ଭଳି ହୋଇ ମାଇଁ କହିଲେ, 'ବାବୁଲ, ଗୋଟିଏ କଥା ପଚାରିବି, ରାଗିବୁନି ତ ?'

'ପଚାରୁନ, ରାଗିବି କାହିଁକି ?'

'ତୁ ମାନୁ ପାଖକୁ ଯିବା ଆସିବା କରୁଥିଲୁ ?'

'ହେଁ .... କିନ୍ତୁ କାହିଁକି ?'

'ମୁଁ ମଝିରେ ଶୁଣିଲି ତୁ ତାକୁ ବାହାହବୁ ବୋଲି ।'

'କିଏ କହିଲା ?' ମୋ ଛାତି ଧଡ଼ଧଡ଼ ହେଲା ।

'କିଏ ଗୋଟିଏ କହୁଥିଲା...... ।'

ମୁଁ ଦୀର୍ଘ ନିଶ୍ୱାସଟିଏ ନେଲି । ସେଇଥିରୁ ମାଇଁ ଜାଣି ପାରିଲେ କି କ'ଣ କେଜାଣି । କିନ୍ତୁ ମୋତେ ଏକ ଲୟରେ ଚାହିଁଥିଲେ ।

ସେ ବିଷୟ ବଦଳାଇବା ପାଇଁ କହିଲି, 'ମାମୁଁଙ୍କ କାମ ସବୁ ଠିକଠାକ ହେଲା ନାଁ ଡେ଼ରି ହେଲା ?'

'ଟିକେ ଡେ଼ରି ହେଲା । ଲଖୋବାର ଝୁଅମାନଙ୍କୁ ମାସକୁ ପଚାଶଟି ନଡ଼ିଆ ଦେବାପାଇଁ କହିଲାରୁ ହିଁ ଯାଇ ପିଣ୍ଡପାତ୍ରରୁ ପିଣ୍ଡ ନେଲେ ।'

'ଏ କଥା କିଏ କହିଲା ?'

'ଲଖୋବା ହିଁ କହିଲା । ତା ଝୁଅ ସବୁ ତ ଏଇଠି ବଢ଼ିଲେ । ଘରେ ଏତେ ଯାଗା ଅଛି ବୋଲି ତାଙ୍କୁ ବି ରହିବାପାଇଁ ଏଇଠି ଯାଗା ଦେଇଥିଲେ ।'

ଲଖୋବା ଅଗଣାରେ ବସି ଚିଳମ ଟାଣୁଥିଲା । ତାକୁ ଶୁଣେଇବା ଭଳି କହିଲି, 'ଭଲ ହେଲା । ଲଖୋବାର ଝୁଅମାନେ ମଙ୍ଗଳ ମନାସିବେ ।'

ଲଖୋବା କାଶିଲା ।

'ଯାଉଛି ଚୁଲି ଲଗେଇବି ।' ମାଇଁ ଭିତରକୁ ଚାଲିଗଲେ । ଦୁଇହାତ ଛାତିଉପରେ ରଖି ମୁଁ ସେମିତି ପଡ଼ିରହିଲି ।

*

ଲଖୋବା ଗିନାରେ ତେଲ ନେଇ ଆସିଲା । ମୋ ପାଦରେ ତେଲ ମାଲିସ କଲା ସେଠି ବସିଯାଇ ।

'ତୋ ଝୁଅଙ୍କ ପାଇଁ ମାସକୁ ପଚାଶଟି ଲେଖାଏ ନଡ଼ିଆ ନେବା ଆରମ୍ଭ କଲୁଣି ? ବେଶ୍ ଭଲ ହେଲା ।'

ମୁଁ ଏମିତି କହିଦେଲି । କାରଣ ସେ କଥା ଶୁଣି ମୋତେ ପ୍ରକୃତରେ ବହୁତ ଶାନ୍ତି ଲାଗୁଥିଲା । ଲଖୋବା ମାମୁଁ ଘରେ ଏତେ ବିଶ୍ୱାସର ସହିତ ଏତେ ଦିନ ଧରି କାମ କରି ଆସୁଛି । ମାମୁଁଙ୍କ ପରେ ତା ପାଇଁ ଏମିତି ଗୋଟିଏ ବ୍ୟବସ୍ଥା ହେବା ନିହାତି ଦରକାର ଥିଲା ।

କିଛି ସମୟ ଲଖୋବା ଚୁପ ହୋଇ ରହିଲା । କିଛି କହିଲାନି । ଏପଟ ସେପଟ ଲକ୍ଷ୍ୟ କରି କେହି ନଥିବାର ଦେଖି ଚୁପ ଚୁପ କରି କହିଲା, 'ସେଗୁଡ଼ା ଖାଲି କହିବା କଥା ମ । ବୁଝିଲ ତ ?'

'କ'ଣ ?'

'ଏଇ ମୋ ପିଲାଙ୍କ କଥା ।'

'କେମିତି ?'

'ବହୁତ ବେଳ ଯାଏ ପିଣ୍ଡ ପତ୍ରରୁ ଉଠିଲା ନାହିଁ । ସମସ୍ତେ ବ୍ୟସ୍ତ ହୋଇ ପଡ଼ିଲେ ।'

'ତା' ପରେ ?'

'ମାଇଁ କହିଲେ, ଲଖୋବା ଯା'ତୁ, ହାତ ଯୋଡ଼ି କହ -'

ପିଣ୍ଡ ପାଖକୁ ଯାଇ ହାତ ଯୋଡ଼ିଲି । ଆଖି ବନ୍ଦ କରି କହିଲି 'ସାଆନ୍ତେ ପ୍ରତି ମାସରେ ମାନୁ ପାଖକୁ ପଚାଶ ନଡ଼ିଆ ନେଇ ଦେଇ ଆସିବି ।' ଆଖି ଖୋଲିଲା ବେଳକୁ କାଉ ଆସି ମୁହଁମାରି ପିଣ୍ଡ ନେଇ ଚାଲିଗଲା ।

'କିନ୍ତୁ, ତୁ ଏମିତି କାହିଁକି କହିଲୁ ?'

'ତୁମେ ଜାଣିନ ? ମାନୁ ପରା ତାଙ୍କ ଝିଅ ।'

'କାହାର ?'

'ମାମୁଁଙ୍କର ।'

ମୁଁ ବୋକାଙ୍କ ପରି ଲଖୋବା ଆଡ଼େ ଚାହିଁଥିଲି ।

'ତା' ହେଲେ ତୋ ପିଲାଙ୍କ ପାଇଁ ନଡ଼ିଆ ପଠେଇବା କଥା ?'

'ସେକଥାକୁ ମୁଁ ଓଲଟପାଲଟ କରି କହିଦେଲି । ମାନୁ ପାଇଁ ନଡ଼ିଆ ପଠେଇବା କଥା କହିଛି ବୋଲି ଜଣାପଡ଼ିଥିଲେ ଗାଁରେ ସେ କଥା ପୁଣି ଚର୍ଚ୍ଚାର ବିଷୟ ହୋଇ ପଡ଼ିଥାଆନ୍ତା । ମାଇଁ ତ ଏମିତି ଏତେ କଷ୍ଟ ପାଉଛନ୍ତି । ତାଙ୍କ କଷ୍ଟ ଆହୁରି ବଢ଼ି ଯାଇଥାଆନ୍ତା । ସାରା ଜୀବନଟା ତାଙ୍କର ଦୁଃଖରେ ଗଲାଣି । ଆଉ ନୁହଁ । ମୋ ଛୁଆଙ୍କ ନାଁରେ ନେଇ ମାନୁ ପାଖରେ କାଲି ବସ୍ତାଏ ନଡ଼ିଆ ଦେଇ ଆସିଲି ।'

ଲଖୋବାର କଲିଜାଟା ଏତେ ବଡ଼ । ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା । ପ୍ରକୃତରେ କିଏ କାହା ଫାସରେ କେତେବେଳେ କେମିତି ଯେ ପଡ଼ିବ ସେ କଥା କେହି କହି ପାରିବେନି ।

'ମାନୁ ମାମୁଁଙ୍କ ଝିଅ ବୋଲି ମୁଁ ଆଦୌ ଜାଣିନଥିଲି ।'

'ତୁମେ କେମିତି ଜାଣିବ ?' ଲଖୋବା କହୁଥିଲା, 'ଠାକୁରଙ୍କ ସକାଶେ ସେ କଲ୍ୟାଣୀକୁ ବାହା ହୋଇ ନଥିଲେ । କିନ୍ତୁ ମାଇଁଙ୍କ ସହିତ ତାଙ୍କର ବାହାଘର ହେବା ପୂର୍ବରୁ ସେ କଲ୍ୟାଣୀ ପାଖକୁ ଯିବା ଆସିବା କରୁଥିଲେ । କେବଳ ଘରର ମର୍ଯ୍ୟାଦା ପାଇଁ ଆଉ ଠାକୁର ବିଶ୍ୱାସରେ ସେ କଲ୍ୟାଣୀକୁ ବାହା ନ ହୋଇ ମାଇଁଙ୍କୁ ବାହା

ହୋଇଥିଲେ । ମାଙ୍କ ଚମର ଲକ୍ଷ୍ମୀ ପ୍ରତିମା ହେଲେ କ'ଣ ହେବ ! ତାଙ୍କ ଭାଗ୍ୟରେ ସୁଖ ନଥିଲା । ବେମାର ପଡ଼ିଥିଲେ ଯେ ମରୁ ମରୁ ବଞ୍ଚିଗଲେ ।'

'ଲଖୋବା -' ମୁଁ ଫୁସ ଫୁସ ହୋଇ ତା' କାନରେ ପଚାରିଲି, 'ମାନୁର ଓ ମୋର ସଂପର୍କ କଥା ମାମୁଁ ଜାଣିଥିଲେ ?'

'ହଁ ।'

'କେମିତି ?'

'କଲ୍ୟାଣୀ କହିଥିଲା ।'

'ଶୁଣି କରି ରାଗିଲେ ?'

'ଛି ! ଓଲଟା ତୁମେ ବାହାହୋଇ ଏଇଠି ରହିବ ବୋଲି ମନେ ମନେ ସ୍ଥିର କରିଥିଲେ । ଗାଁର ଆଉ ଚାରିଜଣ ତା' ପାଖକୁ ଯିବାଆସିବା କରିବା ଅପେକ୍ଷା ତୁମେ ହିଁ କେବଳ ତା' ପାଖକୁ ଯିବା ଆସିବାଟା ବହୁତ ଭଲ ହୋଇଥାଆନ୍ତା ।'

ମୋ ଆଖି ପୁଣି ଥରେ ଲୁହରେ ଭର୍ତ୍ତି ହୋଇଗଲା । ଲଖୋବା ମୋ ଲୁହ ପୋଛି ଦେଇ କହିଲା, 'ସମ୍ଭାଳ ନିଜକୁ । ଏତେ ଭାଙ୍ଗି ପଡ଼ିଲେ ଚଳିବ ? ଯାହା ହୋଇଗଲା ଗଲା । ଆଉ ଉପାୟ କ'ଣ ଅଛି ତା ପାଇଁ ।'

କେତେବେଳଯାଏ ମୁଁ ସେମିତି ନିର୍ବାକ ହୋଇ ବସି ରହିଲି । କ'ଣ ମନହେଲା କେଜାଣି ହଠାତ୍ ଉଠିପଡ଼ି ବହୁତ ଆଗ୍ରହରେ ପଚାରିଲି, 'ମାନୁର ପିଲାପିଲି କେତୋଟି ?'

'ଗୋଟିଏ ବୋଲି ଝିଅ । ପାଦରୁ ମୁଣ୍ଡଯାଏ ଗୋଟିପଣେ ତୁମରି ରୂପ ।'

ମୋତେ କରେଣ୍ଟ ମାରିଲା ଭଳି ଲାଗିଲା । ଲଖୋବାର ସେ ଆଗତକୁହା କଥା କେଜାଣି କାହିଁକି ମୋତେ ଆଦୌ ଭଲ ଲାଗିଲାନି ।

'ହଉ ଥାଉ..... ବହୁତ ହୋଇଗଲା ।'

ମୁଁ ତାକୁ ଚୁପ୍ କଲି । ସେମିତି ପଡ଼ି ରହିଲି ।

ପରଦିନ ସଂଧ୍ୟାବେଳେ ମନ୍ଦିରକୁ ଗଲି । ମାନୁ ଘର ଆଡ଼କୁ ନ ଚାହିଁବା ପାଇଁ ଯଥା ସମ୍ଭବ ଚେଷ୍ଟା କରି ସଫଳ ହେଲି । କେବଳ ସେଇଥିପାଇଁ ହାତରେ ଛତାଟିଏ ଧରି ବାହାରି ଥିଲି । ନାଁ ଖରା ଥିଲା ନାଁ ବର୍ଷା ! ତଥାପି ବି ଛତାଟିକୁ ଖୋଲି ଧରିଥିଲି । କେବଳ ତା' ମୁହଁ ନ ଦେଖିବା ପାଇଁ ।

ମନ୍ଦିରରେ ପ୍ରଦକ୍ଷିଣା କରିସାରି ପାଦୁକ ପାଇଲି । ନାରାୟଣ ନନାଙ୍କ ଯାଗାରେ

ଆଉ ଜଣେ ନୂଆ ନନାଙ୍କ ମୁହଁ ଦିଶିଲା । ତାଙ୍କୁ ମୁଁ ଚିହ୍ନି ନଥିଲି । ତାଙ୍କୁ ଇ ନାରାୟଣ ନନାଙ୍କ ବିଷୟରେ ପଚାରିଲି । ଦୁଇବର୍ଷ ପୂର୍ବରୁ ନନା ଦୁନିଆ ଛାଡ଼ି ଚାଲିଗଲେଣି ବୋଲି କହିଲେ ସେ ।

ମୁଁ ଗମ୍ଭୀରା ଭିତରୁ ବାହାରକୁ ଆସି ବସିଲି । ଝାଡ଼ଦୀପ ପରେ ପାରା ବସି ଫଡ଼ଫଡ଼ ହେଉଥିଲେ । କୋଡ଼ିଏ ବର୍ଷ ପୂର୍ବରୁ ଯେମିତି ହଉଥିଲେ ଠିକ ସେମିତି ।

ଏଇଠି ଏଇ ଯାଗାରେ କଲ୍ୟାଣୀକୁ ମୁଁ ପ୍ରଥମ କରି ଦେଖିଥିଲି ।

ପାଦରେ ରୂପାର ପାଉଁଜି ରୁମଝୁମ୍ କରି ହଠାତ ସତର ଅଠର ବର୍ଷର ଝିଅଟିଏ ମୋ ସାମ୍ନାକୁ ଆସିଲା । ଛ ଗଜ ଶାଢ଼ୀ ପିନ୍ଧିଥିଲା ଆଜିକାଲିକା ଝିଅଙ୍କ ପରି । ଦୁଇଟା ଲମ୍ବା ବେଣୀ ଝୁଲୁଥିଲା । ଦେହର ରଙ୍ଗ ଗୋଲାପୀ ଗୋରା ଦିଶୁଥିଲା । ମୋ ଆଡ଼କୁ ଚାହିଁ ଦେଇ ବହୁତ ଦିନର ଚିହ୍ନା ଭଳି ହସି ଦେଲା । ତାକୁ ଲକ୍ଷ୍ୟ କରି ମୁଁ ହସିବାକୁ ବି ଭୁଲିଗଲି ।

'ମାଆ ଡାକୁଚି .......' ସେ ଆସ୍ତେ କରି କହିଲା ।

'କିଏ- ?'

'ମାଆ, ମହାନନ୍ଦା !'

ମୋ କପାଳରେ କୁଞ୍ଚ ପଡ଼ିଗଲା । ମନହେଲା ତାକୁ କହିବି, 'ଯା, ଯା, ପଳା ଏଠୁ ଶୀଘ୍ର ।'

କିନ୍ତୁ ତା' ଉପରେ ରାଗିବାର ଅର୍ଥ କ'ଣ ଅଛି ? ମା' ଉପରେ ଥିବା ରାଗକୁ ଝିଅ ଉପରେ କାହିଁକି ଶୁଝେଇବି ?

'ହଉ ।'

କହିଦେଇ ମୁଁ ସେଠି ସେମିତି ବସି ରହିଲି । ଭାବିଲି ଝିଅଟି ସେଠୁ ଚାଲିଯିବ । ସେ ଗଲାପରେ ମୁଁ ଉଠି ଘରକୁ ଚାଲିଯିବି । କିନ୍ତୁ ସେ ତା' ଯାଗାରୁ ହଲିଲା ନାହିଁ ।

'ତୁ ଯାଆ । ମୁଁ ଆସୁଛି ପଛରେ ।'

'ମାଆ କହିଛି, ତୁମକୁ ସାଙ୍ଗରେ ନେଇ ଯିବାପାଇଁ ।'

ଏତିକି କହିଦେଇ ସେ ତା ଶାଢ଼ୀ ପଣତ ସଜାଡ଼ିଦେଇ ଛିଡ଼ା ହେଲା ସେମିତି ।

'ତୋ ନାଁ କ'ଣ ?'

'ଦମୟନ୍ତୀ ।'

ଠିକ କଲ୍ୟାଣୀ ପରି, ମହାନନ୍ଦା ପରି ଥିଲା ତା'ର ସ୍ୱର ।

ଇଚ୍ଛା ବିରୁଦ୍ଧରେ ମୁଁ ଉଠି ଛିଡ଼ାହେଲି । ଆଗରେ ସେ ଚାଲିଥିଲା । ମୁଁ ତା' ପଛେ ପଛେ । ଅଗଣାରେ ଥିବା ତୁଳସୀ ଗଛ ଶୁଖି ଯାଇଥିଲା । ଚଉରା ଥିଲା ସେମିତି ବିନା ତୁଳସୀରେ । କୁଇ ଗଛର ଚିହ୍ନ ବର୍ଣ୍ଣ ସୁଦ୍ଧା ଦିଶୁ ନଥିଲା । ସବୁ ଉପୁଡ଼ି ଯାଇଥିଲା । ପିଣ୍ଡାରେ ଯେଉଁଠି ସବୁବେଳେ ଶୀତୁ ମୃଦଙ୍ଗୀ ବସୁଥିଲା ସେ ଯାଗାଟି ସେମିତି ଶୂନ୍ୟ ହୋଇ ରହିଥିଲା ।

ଦାଣ୍ଡଘର ଭିତରକୁ ପଶିଲି । ଚାରିକୋଣରୁ ଖୋଲି ଯାଇଥିବା ସଉପ ଗୋଟିଏ ପଡ଼ିଥିଲା । କିଛି ନ କହି ସେଇ ସଉପ ଉପରେ ବସିଲି । ଘରକୋଣରେ ସରୁ କାଠି ଖଣ୍ଡିଏ ଲୁଗା ଗୁଡ଼େଇ ହୋଇ ଛିଡ଼ା ହେଲା ପରି ଦିଶିଲା । ମୋର ତାକୁ ଅନେଇବାକୁ ବି ଇଚ୍ଛା ହେଉନଥିଲା । ପାଦରୁ ଆଣ୍ଠୁତଳଯାଏ ଦିଶୁଥିଲା । ଗୋରାଚମ ଉପର ନୀଳ ରଙ୍ଗର ଶିରା ଫୁଟିକି ଦିଶୁଥିଲା ।

ହଠାତ୍ ମୋର କୋହ ଉଠିଗଲା । ପରିବେଶ ଗମ୍ଭୀର ହୋଇପଡ଼ିବା ପରି ଲାଗିଲା । ମୁଁ ମୁହଁ ଉଠେଇ ଚାହିଁଲି । ମୁହଁରେ ଲୁଗା ଦେଇ ବିକଳ ହୋଇ କାନ୍ଦୁଥିଲା ମାନୁ । ତା ଉପରେ ଆଖି ପଡ଼ିଲେ ଯେ କେହି ତାକୁ ବିଧବାଟିଏ ବୋଲି ଧରିନେବ । ଏମିତି ଦିଶୁଥିଲା । ଆଗ ମାନୁର କିଛି ଦିଶୁ ନଥିଲା । ମୁଣ୍ଡର ବାଳ ସୁଦ୍ଧା ପାଚିଯାଇଥିଲା ।

'କାହିଁକି କାନ୍ଦୁଛ ଆଉ ?'

'ଭାଗ୍ୟକୁ ଆଦରି କାନ୍ଦୁଛି କେବଳ......' ମାନୁ ସେମିତି କାନ୍ଦି କାନ୍ଦି କହିଲା ।

ତା'ର ବିକଳ କାନ୍ଦ ଦେଖି କୌଣସି ଲୋକର ବି ତା' ପ୍ରତି ଦୟା ଆସିଥାଆନ୍ତା । ମୋର କିନ୍ତୁ କୌଣସି ପ୍ରକାର ପ୍ରତିକ୍ରିୟା ହେଉନଥିଲା ।

ସେମିତି ପଥର ଭଳି ବସିଥିଲି ।

ସେ ସେମିତି କାନ୍ଦୁଥିଲା । ଆଉ ସେଠି ବସିବାକୁ ଇଚ୍ଛା ହେଲାନି । ତେଣୁ ଉଠିବା ପାଇଁ ହାତ ଭରା ଦେଇ କହିଲି, 'ଯାଉଛି ।'

'କୁଆଡ଼େ ?'

'ଘରକୁ ।'

'ଏତେ ଶୀଘ୍ର କାହିଁକି ?'

'ବସିଲେ ବି କ'ଣ କରିବି ?'

ପ୍ରଶ୍ନଟି ବୋଧେ ତା' ଅନ୍ତର ଭେଦ କରିଗଲା । ମୋ ଉପରେ ତା'ର ଦୃଷ୍ଟି ସ୍ଥିର ହୋଇଗଲା । ଲୁହ ଝରଉଥିବା ଆଖି ଦୁଇଟି ତା'ର ଜଳି ଉଠିଲା ଯେମିତି । କ'ଣ

ଯେମିତି କହି ପକେଇବ, ଏମିତି ଲାଗୁଥିଲା । କିନ୍ତୁ ନାଁ, ସେ କିଛି କହିଲାନି । ଗୋଟିଏ କୋଣରେ ଅଳିଆ ଜମେଇଲା ପରି ଯାଇ ଲଥ କରି ବସିପଡ଼ିଲା । ତା' ପରେ ପୁଣି ମୋତେ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଲା । ତା' ଚାହାଣୀରେ ଆକ୍ରୋଶ ନ ଥିଲା କିନ୍ତୁ ପ୍ରଶ୍ନ ଥିଲା ଭଳି ଲାଗୁଥିଲା । କହିଲା, 'ଏ ଦେହକୁ କ'ଣ କରି ସାରିଲଣି ?'

'ସେ କଥା କହି ଆଉ ଲାଭ କ'ଣ ?'

'ମଝିରେ ହାର୍ଟ ଆଟାକ ହୋଇଥିଲା ନାଁ ?'

' କିଏ କହିଲା ?'

'ତୁମ ମାମୁଁ କହୁଥିଲେ ।'

'ହଁ, ଯା' ହବା କଥା ତ ହେବ ! ଚିନ୍ତା କରି ଲାଭ କ'ଣ ?' ଇଚ୍ଛା ହେଉଥିଲା ଛାତି ତଳର ସବୁ ଦୁଃଖ ଆଜି ମନଖୋଲି ତା' ଆଗରେ କହିଦିଅନ୍ତି ।

'ଦମୟନ୍ତୀ, ଚା ବସେଇ ଦେ - ।'

ଦମୟନ୍ତୀ ଭିତରକୁ ଗଲା ।

'ନାଁ ନାଁ ମୁଁ ଚା ପିଉନି ଆଉ ।'

'ନାଁ, ଟିକେ ପିଇକରି ଯିବ ନାଁ ।'

'ନାଁ, ମୋର ଇଚ୍ଛା ନାହିଁ, ମୁଁ ମୋଟେ ପିଇବିନି ।'

'ଏତେ ଜିଦ୍ଦି କାହିଁକି ?'

'ଅଯଥା ପ୍ରଶ୍ନ କାହିଁକି କରୁଛ ? ସବୁ ଜାଣିଛ ତୁମେ ।'

ଛଳଛଳ ଆଖିରେ ସେ ଚାହିଁଲା ମୋ ଆଡ଼େ । ମୁଁ ବି ତା' ଆଖିକୁ ଚାହିଁଥିଲି । ମୋତେ ଲାଗିଲା ମୋ ଆଖି ବି ଲୁହରେ ଭର୍ତ୍ତି ହୋଇଗଲାଣି ବୋଧେ । ଭୟରେ ମୁଁ ଆଖି ଫେରେଇଲି ତା' ଉପରୁ । ପାଟିରୁ ବାହାରି ପଡ଼ିଲା, 'ତୁମେ ଆଗରୁ .... ମୋତେ ପୁଣି ଜାଲରେ କାହିଁକି ପକଉଥିଲ ?'

'ମିଛ... ମିଛ... ପୂରା ମିଛ ।'

ମାନୁ ପାଗଳଙ୍କ ପରି ଚିତ୍କାର କରି ଉଠିଲା । ସେ ଚିତ୍କାରରେ ତା'ର କାଣ୍ଡ ବି ଉଠିଗଲା ।

ମୁଁ ଚମକି ପଡ଼ିଲି ।

'ଠାକୁରଙ୍କ ନାଁରେ ମୋରି ଗଳାରେ ଛୁରୀ ଚଳେଇଲେ ସମସ୍ତେ !'

'ସମସ୍ତେ ମାନେ ?'

'ଏ ରାକ୍ଷସୀ ଆଉ ତୁମ ମାମୁଁ ।'

'କେଉଁ ରାକ୍ଷସୀ ?'

'ମୋ ମାଆ.... କଲ୍ୟାଣୀ....'

ମୁଁ ବୋକାଙ୍କ ପରି ଚାହିଁଥିଲି ।

'ଆମ ଦୁହିଁଙ୍କର ବାହାଘର ହେଲେ ତୁମର ଅମଙ୍ଗଳ ହେବ, ସର୍ବନାଶ ହେବ ବୋଲି ସମସ୍ତେ ମୋରି ଗଳାକୁ କାଟିଲେ । ତାଙ୍କ ଭାଗ୍ୟକୁ ତାଙ୍କ ସହିତ ଯୋଡ଼ି ହୋଇଗଲା ସେ ପୋଡ଼ାମୁହାଁ ସୋମାଜୀ ମାଷ୍ଟର । ସତ୍ୟାନାଶ ହେବ ସେ ପୋଷ୍ଟମାଷ୍ଟର ବୁଢ଼ାର ।'

'ସେ କ'ଣ କଲା ?'

ମୋତେ ନେବାପାଇଁ ଆସୁଛ ବୋଲି ତୁମେ ଲେଖିଥିବା ଚିଠିକୁ ଆଗ ସୋମାଜୀ ମାଷ୍ଟର ଖୋଲି ପଢ଼ିଥିଲା । ତା'ପରେ ସେ ତାକୁ ମାଆକୁ ପଢ଼ି ଶୁଣେଇଲା । ମୋତେ ସେ ବିଷୟରେ କେହି କିଛି କହିଲେନି । ତୁମେ ଆସି ପହଞ୍ଚିବା ଆଗରୁ ଏ ରାକ୍ଷସୀ ମୋତେ ସୀତୁ ମୃଦଙ୍ଗୀ ସହିତ ପିଙ୍ଗୁଳି ପଠେଇଦେଲା, ମାଉସୀ ଘରକୁ । ତୁମକୁ ମିଛରେ କହିଦେଲା ମୋର ପାଞ୍ଚମାସର ଗର୍ଭ ରହିଛି ବୋଲି । ଏତେବଡ଼ ମିଛକଥା କହିଦେଲା ପରେ ବି ମୋତେ ସେ କିଛି କହିନଥିଲା ତୁମ ଆସିବା ବିଷୟରେ । ବରଂ ତୁମେ ଆଉ ଆସିବନି ବୋଲି ସବୁବେଳେ କହୁଥିଲା । ପୁରୁଷ ଜାତି ସ୍ୱାର୍ଥପର ବୋଲି ପ୍ରତିଦିନ ମୋ ଆଗରେ ଶହେଥର କହୁଥିଲା । ତଥାପି ବି ମୁଁ ତୁମ ଉପରେ ରାଗ କରିନଥିଲି । କିନ୍ତୁ ତା କଥା ସବୁବେଳେ ଶୁଣି ଶୁଣି ଅଧୈର୍ଯ୍ୟ ହୋଇ ତୁମପାଖକୁ ଯେଉଁ ଚିଠିଟି ଲେଖିଲି ସେଇଟା ବି ସେ ସୋମାଜୀ ବୁଢ଼ା ଆଗ ପଢ଼ିଦେଲା ଆଉ ପଢ଼ିସାରି ଚିରି ବି ଦେଲା । ଭିତରେ ଭିତରେ ମୁଁ କେବଳ ଜଳୁଥିଲି ଯାହା । ଷୋହଳ ବର୍ଷ ଯାଏ ମୁଁ ସେ ଯନ୍ତ୍ରଣା ସହିଲି । ଏଇମାତ୍ର ତିନିବର୍ଷ ଆଗରୁ ଗୋଟିଏ ଗୋଟିଏ ହୋଇ ସବୁକଥା ମୋ ପାଖକୁ ଆସିଲା । ରାଗରେ ତା' ମୁଣ୍ଡଟାକୁ ମୁଁ କାନ୍ଥରେ ପିଟି ଦେଇଥିଲି । କିନ୍ତୁ ସେଥିରେ ବି ତା' ପ୍ରାଣ ଛାଡ଼ିଲାନି ।'

'କିଏ ? ତୁମେ କାହା କଥା କହୁଛ ?'

'ସେଇ ଚଣ୍ଡାଲୁଣି ହିଁ ମୋର ଏକମାତ୍ର ଆଜନ୍ମ ଶତ୍ରୁ । ଆଉ କାହା କଥା କହିବି ?'

'ଏବେ ସେ କେଉଁଠି ଅଛି ?'

'ଭିତରେ, ଗୁହାଳରେ ପଡ଼ିଛି ।'

'କାହିଁକି ?'

'ନିଜର କର୍ମଫଳ ଭୋଗୁଛି । ପାପର ଫଳ ସିଏ ନିଜେ ଭୋଗିବନି ତ ଭୋଗିବ କିଏ ? ମୁଣ୍ଡ ଠିକ ନାହିଁ ଆଉ । ପୂରା ପାଗଳି ହୋଇଯାଇଛି ।'

'କୋଉଠି, ଚାଲ ମୁଁ ଦେଖିବି ତାକୁ ।'

ମାନୁ ମୋତେ ବାହାରକୁ ନେଇ ଗୁହାଳ ପାଖକୁ ଗଲା । ଏ ଘରେ ଆଗରୁ ଘାସ ରଖାଯାଉଥିଲା । ଘର ଭିତର ପୁରା ଅନ୍ଧାର ଦିଶୁଥିଲା ।

ଡ଼ିବି ଜଳେଇ ମାନୁ ଉପରକୁ ଟେକି ଧରିଲା । ଅନ୍ଧାର ଭିତରେ ଦୁଇଟାବିନ୍ଦୁ କେବଳ ଚକ ଚକ ହେଉଥିଲା । କଲ୍ୟାଣୀ ମିଟି ମିଟି ହୋଇ ଅନେଇଥିଲା କେବଳ । ଘୁସୁରି ଘୁସୁରି ସେ କବାଟ ଯାଏ ଆସିଲା । ସାରା ଦେହ ତାର ଉଲଗ୍ନ ଥିଲା । କବାଟା ବନ୍ଧ ଉପରେ ହାତ ପକେଇ ସେ ମୋ ଆଡ଼େ ଚାହିଁଲା ।

'କିଏ ରେ ?' ସେ ଆସ୍ତେ ଆସ୍ତେ ପଚାରିଲା ।

'ଥୁଃ,' ମାନୁ ଛେପ ପକେଇଲା ପରି କଲା ।

'କିଏ ?' କଲ୍ୟାଣୀ ପୁଣି ଥରେ ପଚାରିଲା ।

'ମୁଁ ବାବୁଲ -'

'ଦୁର୍ଗାର ବାବୁଲ ?'

'ହଁ ।'

'ପୁଅ... ରାଗିବୁନି... ସବୁ କରିଛି ମୁଁ... ମୋରି ମଙ୍ଗଳ ପାଇଁ... ଠାକୁର ଠିକ ବୁଦ୍ଧି ଦେଲେ ମୋତେ...'

ସେ ଛଟପଟ ହୋଇ କହୁଥିଲା । ତା ପରେ ତା' ମୁଣ୍ଡଟିକୁ ବି ବନ୍ଧ ଉପରେ ରଖିଦେଲା ଥକିଗଲା ପରି ।

ମାନୁ ପଛକୁ ହଟିଗଲା। କଲ୍ୟାଣୀର ଏମିତି ଅବସ୍ଥା ଦେଖିପାରୁ ନଥିଲି ମୁଁ । ପଛକୁ ଫେରିଲି । ମାନୁକୁ କହିଲି, 'କି ଦଶା ହୋଇଛି ।'

'ମରିଗଲେ ସିଧା ନର୍କକୁ ଯିବ ।'

ମାନୁ ରାଗରେ ଜଳୁଥିଲା ଯେମିତି । କଲ୍ୟାଣୀ ବିଷୟରେ କହିଲା ବେଳକୁ ତା ରକ୍ତ ଯେମିତି ଟକମକ ହୋଇ ଫୁଟୁଥିଲା ।

'ମୋ ଜୀବନଟାକୁ ଜାଳିପୋଡ଼ି ଛାରଖାର କରିଦେଲା । ମନରେ କେତେ

ଆଶା ଥିଲା – ବାହାଘର ହେବ – ପିଲାଛୁଆ ନେଇ ସଂସାର କରିବି ! ସ୍ୱାମୀସୁଖ ପାଇବି ! ପରିବାର ସୁଖ ପାଇବି ! ହେଲେ..... ।'

କାନ୍ଦୁରେ ଭରାଦେଇ ଛିଡ଼ା ହୋଇଥିଲା ମାନୁ । ପାଗଳୀଙ୍କ ପରି ନିଜକୁ ନିଜେ କହି ଚାଲିଥିଲା ସେ ।

'ସେତିକିବେଳେ ମନ ହେଉଥିଲା କନିଅର ଫଳ ଖାଇ ଜୀବନ ଦେଇଦେବି । କିନ୍ତୁ ଗର୍ଭରେ ତୁମର ଏ ଝିଅ..... !'

'ତୁମ ଝିଅ... କାହାର ମୋର !' ମୁଁ ଦମୟନ୍ତୀ ଆଡ଼କୁ ଚାହିଁଲି ।

ଏମିତି ଅନେଇଲେ ଅବଶ୍ୟ କିଛି ଜଣାପଡୁ ନଥିଲା । କିନ୍ତୁ ମାନୁଠାରୁ ଶୁଣିବାପରେ ତାଁ କଥା ସତ ବୋଲି ବୁଝିପାରୁଥିଲି । ଭଲ ଭାବରେ ନିରୀକ୍ଷଣ କରି ଚାହିଁଲେ ଦମୟନ୍ତୀର ମୁହଁରେ ମୋ ମୁହଁର ପ୍ରତିବିମ୍ବ ଦିଶୁଥିଲା । ବିଶେଷ କରି ତା' ଗାଲରେ ହୋଇଯାଉଥିବା ଗାତଟି ଅବିକଳ ମୋରି ପରି ଥିଲା । ଆଖିବି ମୋରି ଆଖି ପରି ଦିଶୁଥିଲା । ସେଦିନ ସେଇଥିପାଇଁ ବୋଧେ ଲଖେବା ଜୋର ଦେଇ କହିଥିଲା, 'ଗୋଡ଼ ଠାରୁ ମୁଣ୍ଡଯାଏ ଅବିକଳ ତୁମରି ପରି ।'

'କ'ଣ ଦେଖୁଛ ଏତେ ? କିଛି କହୁନା କାହିଁକି ?'

ପିଣ୍ଡାରେ ଥିବା ଖୁଣ୍ଟକୁ ଧରି ମୁଁ ଛିଡ଼ା ହୋଇ ଏକ ଲୟରେ ଅନେଇଥିଲି । ମୁଣ୍ଡ ଭିତରଟା ଝିମ୍‌ଝିମ୍ ହୋଇ ଯାଉଥିଲା । କ'ଣ କହିବି, କ'ଣ କରିବି କିଛି ବୁଝି ପାରୁ ନଥିଲି ।

ଗତ କୋଡ଼ିଏ ବର୍ଷର ଅଶାନ୍ତିର ମୂଳ ମାନୁର କରଆଙ୍ଗୁଳି ଚାରିକଡ଼େ ହିଁ ବୁଲୁଥିଲା ତା'ହେଲେ !

ମୋର ଅବସ୍ଥା ପୁଣିଥରେ ବିଚିତ୍ର ପରିସ୍ଥିତି ଭିତରକୁ ଆସି ଯାଇଥିଲା । କାହା ପ୍ରତି ମାୟା ମମତା ନଥିଲା କି ଈର୍ଷା ଦ୍ୱେଷ ବି ନଥିଲା । କିଛି ଅଭିଯୋଗ ବି ନଥିଲା । ସବୁ ମୋ ଭାଗ୍ୟ !

ବହୁ ବେଳଯାଏ ସେମିତି ଛିଡ଼ା ହୋଇଥିଲି । ତା ପରେ –

'ଯାଉଛି... ।' ମାନୁ ଆଡ଼େ ଚାହିଁ କହିଲି । ମାନୁ କେବଳ ମୁଣ୍ଡ ହଲେଇ ଦେଲା ସମ୍ମତି ସହ ।

ମୁଁ ଅଗଣାକୁ ଆସିଲି । ମୋ ପଛେ ପଛେ ମାନୁ ବି ଆସିଲା ।

'ଏବେ ମୋର ତୁମଠାରୁ କୌଣସି ପ୍ରକାର ଆଶା ଆକାଂକ୍ଷା ଅଛି ବୋଲି

କିମ୍ୱା ମୋ ପ୍ରତି ତୁମେ ଦୟା ଦେଖେଇବ ବୋଲି ଏସବୁ କହୁ ନାହିଁ । ମୁଁ ତୁମସହ କୌଣସି ପ୍ରକାରର ଛଳନା କିମ୍ୱା ପ୍ରତାରଣା କରିନାହିଁ । କଳଙ୍କର ଦାଗ ମୋର ନାହିଁ । ବରଂ ତୁମରି ସ୍ମୃତିକୁ ପାଥେୟ କରି ଝିଅଟିକୁ ନେଇ ଆଜିଯାଏ ବଞ୍ଚି ରହିଛି । ଏତେଦିନ ଯାଏ କେମିତି ବଞ୍ଚି ରହିଲି ସେକଥା ସେଇ ଠାକୁର ହିଁ ଜାଣନ୍ତି । ମୋ କାମ ସରିଗଲା ଆଜି । ଆଉ ମୋର କିଛି ଦରକାର ନାହିଁ ।'

ଦିନ ଗଡ଼ିଯାଇ ଚାରିଆଡ଼େ ସନ୍ଧ୍ୟାର ଅନ୍ଧାର ପ୍ରସରି ଯାଇଥିଲା ।

ଛତାଟି ଧରି, ଗୋଟିଏ ଗୋଟିଏ ପାଦ ପକେଇ ମୁଁ ରାସ୍ତାରେ ପହଞ୍ଚିଲି । କିଛିବାଟ ଆଗକୁ ଗଲାପରେ ପଛକୁ ବୁଲି ଚାହିଁଲି । ତାଙ୍କର ଘର ଦୁଆର ମୁହଁରେ ମାନୁ ସେମିତି ଛିଡ଼ା ହୋଇଥିଲା । ଲୁଗା କାନିରେ ଆଖି ପୋଛୁଥିଲା ।

ରାତିରେ ଖାଇସାରି ମୁଁ ବାହାର ପିଣ୍ଡାରେ ବସିଥିଲି । ପିଣ୍ଡାରେ ଥୁଆ ହୋଇଥିବା ଲଣ୍ଠନଟି ଦିକିଦିକି ହୋଇ ଜଳୁଥିଲା ।

ମାଇଁ ବାହାରକୁ ଆସିଲେ । ଗୋରା ଗୋରା ପାଦ ଦୁଇଟିରେ ଝୁଣ୍ଟିଆ ନଥିଲା ଆଉ । ମଥାରେ ସିନ୍ଦୂର ନାହିଁ । ଗଳାରେ ମଙ୍ଗଳସୂତ୍ର ନାହିଁ । ମୁଣ୍ଡର ସବୁତକ ବାଳ ପାଚିଲା । ଲଣ୍ଠନର ଧୀମା ଆଲୁଅରେ ମାଇଁଙ୍କ ଚେହେରା ମୋତେ ଭୟଙ୍କର ଦିଶୁଥିଲା । ଶୀତରେ ଜାକିଜୁକି ହୋଇ ବସିଲାପରି ସେ ବସିଥିଲେ । ବହୁତ ବେଳଯାଏ ସେ ସେମିତି ବସିଥିଲେ ନିରବରେ । ସାରା ଘରଟା ନିସ୍ତବ୍ଧ ଲାଗୁଥିଲା । ତକିଆକୁ ଡ଼େରିହୋଇ ମୁଁ ବସିଥିଲି । ପାଦ କୁଣ୍ଡଉଥିଲି ଅନ୍ୟମନସ୍କ ଭାବରେ ।

ପିଣ୍ଡା ପାହାଚରେ ଲଖୋବା ବସିଥିଲା । ମଝିରେ ମଝିରେ କାଶୁଥିଲା ।

'ମାଇଁ.... ।'

ମାଇଁ ମୋ ଡାକରେ ବୁଲିପଡ଼ି ମୋତେ ଚାହିଁଲେ । ଖୁବ କଷ୍ଟରେ । ତାଙ୍କୁ କେତେ କଷ୍ଟ ହେଉଥିବ ମୁଁ ଠିକ ବୁଝିପାରୁଥିଲି ।

'ମାନୁ କଥା ତୁମକୁ କହିଲା କିଏ ?'

'ଆରେ, ଏ ଗାଁଟି ଏମିତି କେତେ ବଡ଼ କି ? ଗଡ଼ିଆ ଭିତରେ ଗୋଟିଏ ବେଙ୍ଗ ବୋବେଇଲେ ଆଉ ବେଙ୍ଗଟିକୁ ଶୁଭିବନି ? ତୋର ମନେ ଅଛି ? କ୍ରୀସମାସ ଛୁଟୀରେ ତୁ ଠାକୁରଙ୍କଠାରୁ ହୁକୁମ ନେବାପାଇଁ ଆସି ସାଙ୍ଗେ ସାଙ୍ଗେ ଗୋଟିଏ ଦିନରେ ଚାଲିଗଲୁ । ତା'ପରେ ସେ ପିଲ୍ଲୁଡ଼ିରୁ ଆସିଲା ଆଠଦିନ ପରେ । ଦୁଇମାସ ଚାଲିଗଲା । ତା'ପରେ ପ୍ରତି ଦୁଇଦିନରେ ଆସି  ତୋ କଥା ପଚାରୁଥିଲା । କେବେ ଆସିବେ...

କେବେ ଆସିବେ ? କିଛି ଯଦି ହୋଇଛି ତା ହେଲେ କୁହନ୍ତା ହେଲେ ! ନ କହିଲେ ବି କ'ଣ ବୁଝିବାକୁ ବାକି ରହିବ ?'

ମାଇଁ ଗୋଟିଏ ଦୀର୍ଘ ନିଃଶ୍ୱାସ ନେଲେ ।

'ସେତିକିବେଳେ ସେଇ ଝିଅଟିକୁ ବାହାହୋଇ ଯାଇଥିଲେ କେତେ ଭଲ ହୋଇଥାଆନ୍ତା ! ଏ ଗାଁ ଲୋକେ କୁକୁର ଭଳିଆ ଚାରିଦିନ ଯାଏ ହାଉହାଉ ହୋଇଥାଆନ୍ତେ । ତା'ପରେ ଆପେ ଆପେ ଚୁପହୋଇ ଯାଇ ଥାଆନ୍ତେ ! ଦେବଦାସୀକୁ ରକ୍ଷିତା ରୂପେ ରଖିବା ଅପେକ୍ଷା ବାହା ହୋଇଯିବା ଭଲ ... ନୁହେଁ... ?'

'ସେଥିପାଇଁ ଠାକୁରଙ୍କ ଅନୁମତି ମିଳେ ନାହିଁ ପରା !'

'ପୋଡ଼ି ପାଉଁଶ ହୋଇଯାଉ ସେ ଅନୁମତି ! କି ଠାକୁର ସିଏ ? କେବଳ ନଚଉଛନ୍ତି ସମସ୍ତିଙ୍କୁ ଯାହା ! ଠାକୁରଙ୍କ ପାଖରେ ଆମେ କ'ଣ ଦୋଷ କରିଥିଲୁ ? ଠାକୁର ଆମର କ'ଣ ଭଲ କଲେ ଭଲା ! ସାରା ଜୀବନଟା ମୋର ବିତିଗଲା ଚୂଲି ଫୁଙ୍କି ଆଉ ଅଇଁଠା ବାସନ ମାଜି ଧୋଇ। ଠାକୁର... ଧର୍ମ... ହୁଁ !'

ମାଇଁ ଛେପ ପକେଇବା ପରି ହୋଇ କହିଲେ ।

ମାଇଁ ଆଜି ତାଙ୍କ ମନକଥା କହିଲେ । କିନ୍ତୁ ଖୁବ୍ ଡ଼େରିରେ । କୋଡ଼ିଏ ବର୍ଷ ପରେ ମୁହଁ ଖୋଲିଥିଲେ ।

'ବାହାଘର ଗୋଟିଏ ଜୁଆ !'

ମୁଁ ଦୀର୍ଘନିଶ୍ୱାସ ଛାଡ଼ି କହିଲି ।

'ଏବେ ଆଉ ସେ କଥା କାହିଁକି କହୁଛୁ ? ଯାତ୍ରାବେଳେ ଦେଖିଛୁ ନାଁ କେତେ ଲୋକ ଦଳଦଳ ହୋଇ ସେଠି ବସିଥାଆନ୍ତି ଜୁଆଖେଳରେ । ସମସ୍ତେ କ'ଣ ପଇସା ପାଆନ୍ତି ? କାହା ଭାଗ୍ୟକୁ ମିଳେ କାହା ଭାଗ୍ୟକୁ ହାରିବା ବି ଥାଏ ! ନିଜ କର୍ମଟା ବି ସେମିତି । ଯାହାକୁ ମିଳିଲା ମିଳିଲା । ଯାହା ଭାଗ୍ୟରେ ନାହିଁ, ନାହିଁ !' ମାଇଁ କହିଲେ ଉଦାସୀଆ ସ୍ୱରରେ ।

ମାଇଁଙ୍କ କଥା ଶୁଣି ଯାତ୍ରା ମନେ ପଡ଼ିଗଲା । ଯାତ୍ରା... ସେ ଶିଉଳୀ ରଙ୍ଗର ଶାଢ଼ୀ... ଅବୋଲୀ ଫୁଲର ହାର... ସବୁ ଆଖି ସାମ୍ନାରେ ନାଚିଗଲା ।

'ଆରେ ବାବୁଲି, ତୁ ମାଧବ ନାଦକର୍ଣ୍ଣୀଙ୍କୁ ଚିହ୍ନିଛୁ ?'

'ନାଁ ତ !'

'ତୁ ବି କେମିତି ଚିହ୍ନିବୁ ? ସେ ତ ମୋ ମାମୁଁ ପୁଅ ଭାଇ । ତାଙ୍କରି ସହିତ

ମୋ ବାହାଘର ହେବ ବୋଲି ଠିକ ହୋଇଥିଲା ।'

'ତା'ପରେ କ'ଣ ହେଲା ?'

'ମୋ ବାପା ଏ ବାହାଘର ଭାଙ୍ଗିଦେଲେ ଆମ ପଟରୁ ।'

'କାହିଁକି ?'

'ସେ ମାଧବ... ତାଙ୍କ ଉପର ଭାଇ... ତାଙ୍କ ଭଲ ନାଁ କ'ଣ ମନେ ପଡୁନି ଏଇନା'... ମାଇଁ ମନେପକେଇବା ପାଇଁ ଚେଷ୍ଟା କରୁଥିଲେ । କିନ୍ତୁ ତାଙ୍କର ବୋଧେ ମନେ ପଡୁନଥିଲା ।

'ଜିଭ ଅଗରେ ଅଛି ମ ! ଏଇନା କିନ୍ତୁ ମନେ ପଡୁନି । ଛାଡ଼.... ହଁ କ'ଣ କହୁଥିଲି ? ହଁ ସେ ବଡ଼ଭାଇ ତାଙ୍କର ତିଳକଙ୍କ ପେପରରେ କ'ଣ ସବୁ ଲେଖାଲେଖି କରୁଥିଲେ । ସେ ସବୁ ଭାରତ ସରକାରଙ୍କ ବିରୁଦ୍ଧରେ । ବାପା ଭାବିଲେ ତାଙ୍କ ଯୋଗୁ ଭବିଷ୍ୟତରେ ତାଙ୍କ ଝିଅ ବି ହଇରାଣରେ ପଡ଼ିବ । ତେଣୁ ମୂଳରୁ ହିଁ ବାଟଭାଙ୍ଗି ଚାଲିଯିବାଟା ସବୁଠାରୁ ଶ୍ରେୟସ୍କର । ସେ ପ୍ରସ୍ତାବକୁ ନାହିଁ କରିଦେଇ ଏଠି ସମ୍ବନ୍ଧ କଲେ । ମୋ ଭାଗ୍ୟରେ ଏଇଠି ହିଁ ସଢ଼ିବାପାଇଁ ଥିଲା !'

ବହୁତ ସମୟଯାଏ ମାଇଁ ଅନ୍ଧାର ଭିତରେ କିଛି ଖୋଜିଲା ଭଳିଆ ଚାହିଁ ରହିଥିଲେ । ତାପରେ କହିଲେ, 'ସେଇ ମୋ ମାମୁଁପୁଅ ଭାଇ ମୋ ବାହାଘରକୁ ପିତଳର ବଡ଼ ତୋପ ଗୋଟିଏ ଦେଇଥିଲେ ଉପହାର ସ୍ୱରୂପ । ପଡ଼ିଥିବ କେଉଁଠି ଅମାର ତଳେ ! ପନ୍ଦର ବର୍ଷ ପୂର୍ବେ ଏଇ ତହସିଲର ତହସିଲଦାର ହୋଇ ଆସିଥିଲେ । ଦୁଇ ତିନି ବର୍ଷ ଯାଏ ସେ ଏଇ ତହସିଲରେ ରହିଥିଲେ । ସେତିକିବେଳେ ଆମର କ'ଣ ଜମିବାଡ଼ିର ଅଡୁଆ ସବୁ ଥିଲା । ସେଇ ଅଡୁଆ ତୁଟେଇବା ପାଇଁ ଏଠିକି ଆସିଥିଲେ । ତା'ପରେ ଆଉଥରେ ନିମନ୍ତ୍ରଣରେ ଏଠିକି ଆସିଥିଲେ ଖାଇବା ପାଇଁ । ମୋ ସହିତ କଥାବାର୍ତ୍ତା ବି କରି ନଥିଲେ । ମୁଁ ବି ମୋ ଆଡୁ ଚୁପ ରହିଲି । ୟାଙ୍କର ତ ସହଜେ ସନ୍ଦେହୀ ସ୍ୱଭାବ । ତାଙ୍କର ଚାରୋଟି ପୁଅ । ଅଥଚ ମୁଁ ଏଠି... !'

କହୁ କହୁ ମାଇଁଙ୍କ ପାଟିରୁ ହଠାତ ଫେଣ ବାହାରି ପଡ଼ିଲା । ଦାନ୍ତ କଡ଼ କଡ଼ କରି ଅଦ୍ଭୁତ ଆବାଜ ବାହାରୁଥିଲା ତାଙ୍କ ମୁହଁରୁ । ହାତ ମୁଠା ମୁଠା କରି ପକଉଥିଲେ । ସାରା ଶରୀରଟା ତାଙ୍କର କାଠ ଭଳି ହୋଇଗଲା । ଗୋଟିଏ ପଟକୁ ଢଳି ପଡ଼ିଲେ ସେ ।

'ଆରେ ଲଖୋବା...ଲଖୋବା...' ମୁଁ ଛାନିଆ ହୋଇ ଡାକ ପକାଇଲି ।

ଲଖୋବା ପିଣ୍ଡାକୁ ଆସିଲା । କିନ୍ତୁ କିଛି ବ୍ୟସ୍ତହେବାର ଲକ୍ଷଣ ତା'ଠି ଦେଖା ଗଲାନି । ସେମିତି ସ୍ୱାଭାବିକ ଗତିରେ ଭିତରକୁ ଗଲା । ପିଆଜ ଗୋଟିଏ ନେଇ ଆସିଲା । ମାଇଁଙ୍କ ନାକ ପାଖରେ ସେ ପିଆଜକୁ ଦେଖେଇଲା ।

'ତୁମେ ବ୍ୟସ୍ତ ହୁଅନି । ବସ ଆରାମରେ । ଗତ ଚାରିବର୍ଷ ହେଲାଣି ତାଙ୍କର ଏମିତି ହେଉଛି । ଘଣ୍ଟାଏ ଭିତରେ ତାଙ୍କର ଚେତା ଫେରିଆସିବ ।'

ଖୁବ ଶାନ୍ତ ଭାବରେ କହିଲା ଲଖୋବା ।

'ଯଦି ଏମିତି ହେଲା ବେଳକୁ ସେ ଚୁଲି ପାଖରେ ଥିବେ ?'

'ସେଇଥିପାଇଁ ପରା ମୁଁ ବସିଛି । ଇଏ ନ ଗଲାଯାଏ ମୋର ବି ମରଣ ହେବନି !'

ଲଣ୍ଠନର ଧିମା ଆଲୁଅରେ ଲଖୋବାର ଦୃଷ୍ଟି ଅତି କରୁଣ ଦିଶୁଥିଲା ।

'ବାହାଘର... କେବଳ ଗୋଟିଏ ଜୁଆଖେଳ...' ମାଇଁଙ୍କ କଥାଟା ଷୋଳଣା ସତ । ସେ ଜୁଆରେ ସମସ୍ତେ ବଳି ପଡ଼ିଛୁ ! ଯାହାକୁ ମିଳିଲା ମିଳିଲା । ବାକି ସମସ୍ତଙ୍କର ସାରାଜୀବନ ଜଳିବା ହିଁ ସାର ହୁଏ ।

*

ହୋଲି ଦିନ ରାତିରେ ଠାକୁରଙ୍କ ବିମାନ ବାହାରେ । ତେଣୁ ଜାଣି ଜାଣି ସେଦିନ ସଂଧ୍ୟାପରେ ମନ୍ଦିରରେ ଯାଇ ପହଞ୍ଚିଲି । ଆଗର ସେ ଯାତ୍ରାର ଜୋସ ଆଉ ନଥିଲା । ମଦପିଇ ଦେଇ ମାତାଲ ହୋଇ କେତେଜଣ ସେଠି ଧୂଳି ଉଡ଼େଇ ନାଚୁଥିଲେ ଯାହା ! ନାଗରା, ଢ଼ୋଲ, ସାହନାଇ ସବୁ ବାଜୁଥିଲା । ହଲି ହଲି ବିମାନ ଚାଲୁଥିଲା । ଦୁଇ ତିନି ଜଣ ଦେବଦାସୀ ନୋଥ ପିନ୍ଧି ଚାମର ହଲାଇ ଚାଲିଥିଲେ । ସେମାନେ ସମସ୍ତେ ପ୍ରାୟ ବୟସ୍କା ଥିଲେ । ସେସବୁ ଦେଖି ମନଟା କାହିଁକି କେଜାଣି ଉଦାସ ହୋଇଗଲା । ମନ୍ଦିରରେ ଆଗର ଯାତ୍ରା କଥା ମନେ ପଡ଼ିଲା । କୋଡ଼ିଏ ବର୍ଷ ପୂର୍ବର ସେ ଚିତ୍ର ମୋ ଆଖି ଆଗରେ ଥିଲା । ମନର ଆଖିରେ । କିନ୍ତୁ ବାସ୍ତବରେ ଆଖି ଆଗରେ ଯାହା ଦିଶୁଥିଲା ସିଏ କେବଳ ଥିଲା ତା'ର ଉଜୁଡ଼ା ରୂପ ।

ମନ୍ଦିରରୁ ଫେରି ଆସିଲା ବେଳକୁ ମାନୁ ତାଙ୍କ ଘରଆଗରେ ଛିଡ଼ା ହୋଇଥିଲା । ମୋତେ ଦେଖି ଅଗଣା ଭିତରକୁ ଚାଲିଗଲା । ତା' ପଛେ ପଛେ ମୁଁ ବି ଅଗଣା ଭିତରକୁ ଯିବି ବୋଲି ତା'ର ବିଶ୍ୱାସ ଥିଲା ନିଶ୍ଚୟ । ମୁଁ ଅଗଣା ଭିତରେ ପାଦ ଦଉ ଦଉ ପଚାରିଲି,

'ଯାତ୍ରା ଚାଲିଛି । ତୁମେ ମନ୍ଦିରକୁ ଯାଇନ କାହିଁକି ?'

'ଗଲା କୋଡ଼ିଏ ବର୍ଷ ହେଲାଣି ମୁଁ ମନ୍ଦିର ଯାଇନାହିଁ ।'

'କାହିଁକି ?' ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା ।

'କାହିଁକି ଯିବି ? ଠାକୁର ମୋର କ'ଣ ମଙ୍ଗଳ କଲେ କି ?'

ସେ କେବଳ ମୋତେ ଚାହିଁଥିଲା ।

ମୁଁ କିଛି ସମୟ ଯାଏ ସେଇ ଜହ୍ନ ଆଲୁଅ ଭିତରେ ଅଗଣାରେ ବସିରହିଲି । ଦୋଳ ପୁନେଇର ତୋଫା ଆଲୁଅ ପଡ଼ିଥିଲା ଜହ୍ନର । କିନ୍ତୁ ସେ ଅଗଣା ଶ୍ରୀହୀନ ହୋଇଯାଇଥିଲା ।

'ଏଇଠି ଯେଉଁ ଜୁଇ ଗଛ ଥିଲା କୁଆଡ଼େ ଗଲା ? ଏଇଠି ଚଉରା ପାଖରେ ସଂଧ୍ୟାଦୀପ ରଖି ତୁମେ ପାର୍ଥନା ଗାଉଥିଲ - ଶୁଭଂ କରୋତି...'

ସେ କିଛି କହିଲାନି । ସେମିତି ଅନେଇଥିଲା ମୋ ମୁହଁକୁ ।

ମୁଁ ଅଗଣାରୁ ଯାଇ ଘର ଭିତରେ ବସିଲି ।

ମାନୁ ବି ମୋ ପଛେ ପଛେ ଆସିଲା । ପଚାରିଲା,

'କେତେଦିନ ରହିବ ଆଉ ?'

'ଦୁଇଦିନ ପରେ ଯିବି ।'

'ମୁମ୍ବାଇରେ ରହୁଛ ଏବେ ?'

'ନାଁ, ନାଁ, ମୁମ୍ବାଇ ମୁଁ କେବେଠାରୁ ଛାଡ଼ି କେତେ ଯାଗା ବୁଲି ଆସିଲିଣି ଯା ଭିତରେ । ଏବେ ଜଳଗାଁଉରେ ରହୁଛି । ଏକୁଟିଆ ।'

'ଏକୁଟିଆ..... ସେ କଥା ମୁଁ ଜାଣିଛି ।'

'କିଏ କହିଲା ?'

' ଏକଥା କ'ଣ ମୋତେ କହିଲେ ଯାଇ ମୁଁ ଜାଣିବି ? ମୋର ନିଜର କ'ଣ ଆଗ୍ରହ ନାହିଁ ତୁମ ବିଷୟରେ ଜାଣିବା ପାଇଁ ? କେବଳ ମୋରି ପାଇଁ ତୁମ ଜୀବନଟା ଏମିତି ନଷ୍ଟ ହୋଇଗଲା !'

'ହଁ, ଆଉ ସେ କଥାରେ କ'ଣ ଅଛି ? ଭାଗ୍ୟ !'

ମୁଁ ତା' ଆଖିକୁ ଚାହିଁଲି । ସେମିତି ଚାହିଁ ରହିଲି । ଏତେବର୍ଷ ପରେ ବି ସେ ଆଖି ଲାଗୁଥିଲା ମୋର ନିହାତି ଆପଣାର ପରି ।

'ଆଲୋ ଦମୁ ! ସରବତ ଆଣ ଲୋ !'

'ନାଁ ନାଁ ଆଉ କିଛି ଦରକାର ନାହିଁ ।' ମୁଁ ବାରଣ କଲି ।

'କାଲି ଚା ପିଇଲନି । ସେଇଥିପାଇଁ ଜାଣି ଜାଣି ସରବତ କରି ରଖିଥିଲି ।'

ମାନୁ ସ୍ୱରରେ ସେଇ ପୁରୁଣା ଦିନର ଜୋସ ଥିଲା । ସେମିତି ଆଗ୍ରହ ଥିଲା । ମୁଁ ଆଉ ନାହିଁ କରିପାରିଲିନି । ଦମୟନ୍ତୀ ଆଣି ସରବତ ଗ୍ଲାସ ଥୋଉ ଥୋଉ ମୁଁ ତା' ହାତରୁ ନେଇ ଯାଇ ମୁହଁରେ ଲଗେଇଲି ।

'ଇଏ ଜୁଇର ଗଜରା କରୁନି ?' ଦମୟନ୍ତୀକୁ ଲକ୍ଷ୍ୟ କରି ମୁଁ କହିଲି ।

'ଜୁଇର ଗଜରା ?'

ମାନୁ ମୁହଁ ଶୁଖିଗଲା । କହିଲା, 'ମୁଁ ତ ଫୁଲ ଲଗାଏନି । ତା'ମନ ହେଲେ ସେ କେବେ କେମିତି ବାହାରୁ ଫୁଲ ଆଣି ମାଳ କରି ଲଗାଏ ।'

ମୁଁ ଦମୟନ୍ତୀ ଆଡ଼େ ଚାହିଁଲି । ସେ ହସିଦେଲା । ତା ଗାଲରେ ଭଉଁରୀ ଖେଳିଗଲା ।

'କ'ଣ କରୁଛି ଏଇନା ଇଏ ?'

'ଗଲା ବର୍ଷ ମାଟ୍ରିକ ପାସ କଲା ।'

'ଏବେ ?'

'ମା' ବାଟରେ ଯିବାପାଇଁ ଅପେକ୍ଷା, ଆଉ କ'ଣ ?'

ମୁଁ ବୁଝିପାରିଲି, ମୋତେ ଆଘାତ ଦେଇ ସେ ଏକଥା କହିଲା ।

'କେଉଁଠି ଯଦି ମାଷ୍ଟ୍ରାଣୀ ଚାକିରୀଟିଏ ମିଳେ ତ କରିବ । ଏଠି ନ ରହିଲେ ହିଁ ମଙ୍ଗଳ ! ଠାକୁରଙ୍କ ନାଁରେ ତା' ଜୀବନଟା ବି ନଷ୍ଟ ହୋଇଯିବ !'

'ମୁଁ ନେଇଯିବି ତାକୁ ।'

'କୁଆଡ଼େ ?'

'ମୋ ସାଥିରେ .... ଜଲଗାଁଓ !'

ତା' ଆଖି ଲୁହ ଛଳଛଳ ହୋଇ ପଡ଼ିଲା । କୋଡ଼ିଏ ବର୍ଷ ପୂର୍ବର ସେଇ ମୁହୂର୍ତ୍ତଟିରେ ଯେମିତି ହୋଇଥିଲା ଠିକ୍ ସେମିତି । ତାକୁ ହସ ଲାଗୁ ନଥିଲେ ବି ଶୁଖିଲା ହସଟିଏ ହସିଦେଲା ।

ଦମୟନ୍ତୀ ମୋ କଥା ଶୁଣି ଖୁସି ହୋଇଗଲା । ମୋ ଆଡ଼େ ଚାହିଁ ହସିଦେଇ ଭିତରକୁ ଚାଲିଗଲା ।

'ଅନ୍ତତଃ ତା'ର ବାହାଘର ହୋଇ ଯାଆନ୍ତା କି !'

ମାନୁର ଗଳା ଥରିଯାଉଥିଲା । ମୁଁ ଉଠିଲି । ହଠାତ୍ କ'ଣ ହେଲା କେଜାଣି,

ମାନୁକୁ ନିଜ ଆଡ଼କୁ ଆଉଜେଇ ଆଣିଲି । ଛାତିରେ ଚାପି ଦେବା ପାଇଁ ଚେଷ୍ଟା କଲି । ସେ ଛାଟିପିଟି ହୋଇ ମୁକୁଳି ଗଲା ।

'କାହିଁକି.. ?' ମୁଁ କାବାହୋଇ ପଚାରିଲି ।

'ନାଁ ନାଁ .....ସେ ସବୁ ଆଉ ନୁହଁ, ଦରକାର ନାହିଁ ।'

'କିନ୍ତୁ କାହିଁକି ?'

'ମନରେ ସ୍ମୃତି ଯେତିକି ସାଇତା ହୋଇ ରହିଛି ସେଇ ମୋର ଏ ଜନ୍ମ ପାଇଁ ଯଥେଷ୍ଟ ।'

'ତୁମେ ଏମିତି ଭାବୁଛ କାହିଁକି ? ଆମ ଭାଗ୍ୟର ଏ ଜୁଆଖେଳ !'

ପୁଣି ମୁଁ ପାଦଟିଏ ଆଗେଇଲି ।

'ନାଁ ...... !' ସେ ପଛେଇ ଗଲା ।

'କାହିଁକି... ?'

'ଅଗଁଠା ପତ୍ରରେ ତୁମପାଇଁ ବାଢ଼ିପାରିବିନି ମୁଁ !'

'ଅଗଁଠା....ମାନେ ?'

'ତୁମ ଝିଅକୁ ଖୁବ ଯତ୍ନରେ ସମ୍ଭାଳି ଆସିଛି । ବାସ୍ ସେତିକି କର୍ତ୍ତବ୍ୟ ମୁଁ ଠିକ ଭାବରେ କରିପାରିଛି । ମୋର ତ ସବୁ ସରିଯାଇଛି । ନୀତିଅନୀତି ସବୁ ଚାହିଁଛି ମୋର ଜୁଇକୁ ।'

ମୁଁ ସେଇଠି ଥମ କରି ରହିଗଲି ।

'ମୁଁ... ।'

ମୋ କଥା ସରିବା ଆଗରୁ ସେ କହିଲା, 'ତୁମର ଆମ ପେଟପାଣି ପାଇଁ କିଛି ଦାୟିତ୍ୱ ନାହିଁ ଆଉ ।'

କଳିଜାରେ ତୀର ଫୋଡ଼ିଦେଲା ପରି ଏତିକି କହିଦେଇ କାନ୍ଥ ଭିତରେ ପଶିଯିବା ଭଳି ହୋଇ ସେ ସେଇଠି କାନ୍ଥକୁ ଆଉଜି ଛିଡ଼ା ହେଲା ।

'ଯାଉଛି । ପହରଦିନ ଯିବି । ତାକୁ ନେଇ ବନ୍ଦରପାଖକୁ ଆସିବ ।'

'ଆଲୋ ଦମୁ...' ସେ ଡାକ ଛାଡ଼ିଲା ।

ଦମୟନ୍ତୀ ବାହାରକୁ ଆସିଲା ।

'ଗୋଡ଼ତଳେ ପଡ଼... ।'

ଦମୟନ୍ତୀ ମୋ ପାଦ ଛୁଇଁ ପ୍ରଣାମ କଲା । ତାକୁ କୋଳକୁ ଟାଣିନେଇ ଛାତିରେ

ଯାକି ଧରିଲି । ତା' ମୁଣ୍ଡ ଉପରେ ହାତ ବୁଲେଇ ଆଣିଲି । କିଛି ସମୟ ଯାଏ ସେମିତି ରହିଥିଲି । ଏ ସ୍ପର୍ଶ କେମିତି ଅଲଗା ଅଲଗା ଲାଗୁଥିଲା । ରକ୍ତ ରକ୍ତକୁ ଚିହ୍ନୁଥିଲା ।

ସେ ଉଜୁଡ଼ା ଅଗଣା ଭିତରୁ ବାହାରକୁ ପାଦ ପକେଇବା ବେଳକୁ ମୋତେ ବହୁତ ହାଲୁକା ଲାଗୁଥିଲା । ତୁଳସୀ ନଥିବା ସେଇ ଚଉରା ଉପରେ ଟିକେ ବସିଯିବାପାଇଁ ମନ ହେଲା । ଏଇଠି ସେଇ ମାନୁକୁ ପ୍ରଥମେ ଦେଖିଥିଲି । କିନ୍ତୁ ବସିଲି ନାହିଁ ସେଠି । ସିଧା ରାସ୍ତା ଉପରକୁ ଚାଲି ଆସିଲି ।

ଫେରିଯାଇ ପୁଣି ଥରେ ତାକୁ ଦେଖିଆସିବା ପାଇଁ ଇଛା ହେଲା । କିନ୍ତୁ ଆଉ ଫେରିଲିନି ।

ମୋ କାନକୁ ସେଇ ଗୀତର ଗୁଣୁଗୁଣୁ ସ୍ୱର ଶୁଭୁଥିଲା । ସେଇ କୋଡ଼ିଏ ବର୍ଷ ତଳର । ଛାତି ଭିତରଟା ଛଟପଟ ହୋଇଗଲା । ଅନ୍ତର ଭିତରଟା କୋରି ହୋଇଗଲା ପରି ଲାଗୁଥିଲା ।

ଟିକେ ଛାନିଆ ବି ଲାଗିଲା । ଏଇଠି ଆଉ ତଳେ ପଡ଼ି ଯିବିନି ତ ! ଟିକେ ରହିଗଲି । ଉପରକୁ ମୁହଁ କରି ଦୀର୍ଘ ନିଶ୍ୱାସ କେତୋଟି ନେଲି ।

ଉପରେ ରୂପା ଥାଳି ପରି ଜହ୍ନ ମୋରି ମୁହଁକୁ ଅନେଇଥିଲା ।

ପଛକୁ ବୁଲି ଚାହିଁଲି । ମାନୁ ଘର ଦୁଆର ମୁହଁରୁ ଦୁଇଟା ଆଖି ଛଳ ଛଳ ହୋଇ ମୋରି ଆଡ଼କୁ ଲକ୍ଷ୍ୟ କରିଥିଲା ।

*

ଘରକୁ ଆସି ଗୋଡ଼ ହାତ ଧୋଇ ସାରିବାପରେ ସଉପ ଖଣ୍ଡେ ପକେଇ ଦେଇ ଗଡ଼ି ପଡ଼ିଲି । ସାମ୍ନାରେ ମାମୁଁଙ୍କ ଡ଼େସ୍କଟି ଥୁଆ ହୋଇଥିଲା । ଉପରେ ଦୁଆତ ରଖିବା ପାଇଁ ଖାଲଟିଏ କଟା ହୋଇଥିଲା । ମଝିରେ କଲମ ରଖିବାପାଇଁ ମଧ୍ୟ ଜାଗା କରାଯାଇଥିଲା । ସ୍ୟାହି ଲାଗି ସେ ଯାଗାଟା ପୁରା କଳା ଦିଶୁଥିଲା । ମାମୁଁଙ୍କ ପାଖରୁ ଯେଉଁ ଚିଠି ଆସେ ସେଥିରେ ଏ କଳାଦାଗ ନିଶ୍ଚୟ ଥାଏ ।

ଡ଼େସ୍କ ଉପରର ଛୋଟ ଘୋଡ଼ଣୀଟି ଖୋଲିଲି । ହିସାବ କିତାବ ଖାତା ନାଲି କନାରେ ଗୁଡ଼ାହୋଇ ରଖା ଯାଇଥିଲା । ଗୋଟିଏ କୋଣରେ ଛୋଟ ମୁଣିଟିଏ ଥୁଆ ହୋଇଥିଲା । ମଇଳା କୋଚଟ ମୁଣିଟିଏ ।

ଗୋଟିଏ କଡ଼କୁ  ବିଡ଼ାଟିଏ ଥିଲା । ମୁଁ ଜଲଗାଓଁରୁ, ନାଗପୁରରୁ ଦେଇଥିବା ଚିଠିସବୁ ସେଥିରେ ଥିଲା ।

ତା ପାଖକୁ ଗୋଟିଏ ଅଧା ଲେଖା ଚିଠି ବି ଥିଲା । ଖୋଲି ଦେଖିଲି ।

ମୋରି ପାଖକୁ ଲେଖାହୋଇଥିଲା । ସେଇ ପୁରୁଣା କଥା । ପୋଷ୍ୟପୁତ୍ର କରିବା କଥା । ଚିଠିର ଶେଷ ଧାଡ଼ିରେ ଥିଲା – 'ଯଦି ଇଚ୍ଛା ହେଉଛି ମାନୁ ସହିତ –' ତା ପରର ଶବ୍ଦ କଟାହୋଇଥିଲା । ସେଇଠି ଚିଠି ବନ୍ଦ ହୋଇଥିଲା । ମୁଁ ତାରିଖ ଆଡ଼କୁ ଅନେଇଲି । ମୃତ୍ୟୁର ସାତ ଦିନ ପୂର୍ବରୁ ମାମୁଁ ସେ ଚିଠି ଲେଖିଥିଲେ ।

କଟାହୋଇଥିବା ଶବ୍ଦଟିକୁ ପଢ଼ିବାପାଇଁ ଖୁବ୍ ଚେଷ୍ଟା କଲି । କିନ୍ତୁ ସେ ଶବ୍ଦଟି କ'ଣ ଆଦୌ ଜଣାପଡ଼ିଲାନି । ମୋ ପ୍ରାଣ ଛାଡ଼ି ଯାଉଥିଲା ତାକୁ ଜାଣିବାପାଇଁ ! ଶେଷରେ ମନକୁ ବୁଝେଇଲି । ଆଉ ଅଯଥାରେ ଏଇନା ଚେଷ୍ଟା କଲେ ବି କ'ଣ ଲାଭ ମିଳିବ ? କେବଳ ମନ ଖରାପ ହେବ ଯାହା ! ଡ୍ରେସ୍କର ଘୋଡ଼ଣୀଟିକୁ ବନ୍ଦ କରି ସେଠୁ ଉଠି ଆସିଲି ।

ରୋଷଇ ଘରକୁ ଗଲି । ମାଇଁ ସେଠି ନଥିଲେ । ସବୁ ଘର ଖୋଜି ଆସିଲି । କୋଠିଘରେ ଧାରେ ଆଲୁଅ ଦିଶୁଥିଲା, ସେଠିକୁ ଯାଇ ଦେଖିଲି । ଅମାର ତଳେ ଥିବା ବାସନ କୁସନ ସବୁ ବାହାର କରି, ମେଲେଇ ଦେଇ ଆଗରେ ରଖି ମାଇଁ ବସିଥିଲେ । ପୁରୁଣା, କଳାଦାଗ ଲାଗିଥିବା ବାସନ କୁସନ ସବୁ, ଦୋକାନରେ ଥୁଆ ହେଲା ପରି ଥୁଆ ହୋଇଥିଲା । ତସଲା, ହାଣ୍ଡି, ହଣ୍ଡା, ପରାତ, ଥାଳି, ଥାଳିଆ, କଂସା, ଗିନା ଆହୁରି କେତେ କଣ !

ମୋଟା କାଚର ଚଷମା ପିନ୍ଧି ଲଣ୍ଠନର ଧିମା ଆଲୁଅରେ ମାଇଁ ଗୋଟିଏ ବଡ଼ ଗିଲାସଟିଏ ଧରିଥିଲେ । ତା' ଉପରେ ଲେଖା ହୋଇଥିବା ନାଁକୁ ଅକ୍ଷର ଚିହ୍ନି ଚିହ୍ନି ପଢୁଥିଲେ ।

ମୋ ପାଦଶବ୍ଦ ଯେମିତି ସେ ଶୁଣି ନ ପାରନ୍ତି ସେମିତି ଆସ୍ତେ ଆସ୍ତେ ପାଦ ଚିପି ମୁଁ ସେ ଯାଗରୁ ଚାଲିଆସିଲି । ମାଇଁଙ୍କର ସେ ତନ୍ଦ୍ରା ଭିତରୁ ତାଙ୍କୁ ଉଠେଇବା ପାଇଁ ମୋର ଆଦୌ ଇଚ୍ଛା ହେଲାନାହିଁ ।

ବାହାର ବାରଣ୍ଡାକୁ ଆସିଲି ।

ଅନ୍ଧାରରେ ବସି ଲଖୋବା ତା' ଗୋଡ଼ କୁଣ୍ଡଉଥିଲା । କ'ଣ ଗୋଟିଏ ଭାବନାରେ ବୁଡ଼ି ଯାଇଥିଲା ।

'କ'ଣ କରୁଛୁ କିରେ ଏଠି ବସି ?' ତକିଆକୁ ଡେ଼ରିହୋଇ ବସିଯାଇ ମୁଁ କହିଲି ।

'କିଛି ନାହିଁ ।'

'ତୋ ଛୁଆ ସବୁ ଏବେ କ'ଣ କରୁଛନ୍ତି ?'

'କ'ଣ ଆଉ କରିବେ ? ଭାବିଥିଲି ଝିଅର ବାହାଘର କରିଦେବି । ମୋର ସବୁ ସାହସ ବୁଡ଼େଇ ଦେଇ ସାଆନ୍ତେ ଚାଲିଗଲେ । ସେ ଥିଲେ ସିନା ତାଙ୍କଠାରୁ ଜବରଦସ୍ତୀ କରଜ ନେଇଥାଆନ୍ତି !'

'ବାହାଘର କେଉଁଠି ଠିକ କରିଛୁ ?'

'ଏବେ ଯାଏ କରିନି । କାରଣ ପାଦେ ବି ଯିବାପାଇଁ ସାହସ ମୋର ନାହିଁ ।'

'ହଉ ହଉ, ଆଉ ଚିନ୍ତା କରନି । ବାହାଘର ଠିକ କରି ସାରିଲେ ମୋତେ ଖବର ଦେବୁ । ମୁଁ ଟଙ୍କା ଦେବି ।'

ଲଖୋବା ବସିବା ଯାଗାରୁ ଉଠି ଆସି ନଇଁ ପଡ଼ିଲା ଦି'ହାତ ଯୋଡ଼ି । ସେଇଠି ମୋ ପାଦ ପାଖରେ ମୁଣ୍ଡ ଲଗେଇ କହିଲା 'ପ୍ରଭୁ ରବଳନାଥଙ୍କ କୃପା !'

*

ମାଇଁଙ୍କଠାରୁ ବିଦାୟ ନେଇ ଆସିଲା ବେଳକୁ ମୁଁ ଖୁବ୍ ଅଧୈର୍ଯ୍ୟ ହୋଇ କାନ୍ଦୁଥିଲି । ମାଇଁ ବି କାନ୍ଦୁଥିଲେ ବିକଳ ହୋଇ । ଲଖୋବା ବି ମୁହଁରେ ଗାମୁଛା ଦେଇ କାନ୍ଦୁଥିଲା । ଆମ ତିନିଜଣଙ୍କ ଭିତରୁ କେହି ହେଲେ ବି ମୃତ୍ୟୁକୁ ଭୟ କରୁନଥିଲୁ । କିନ୍ତୁ ଯା ପରେ ଆଉ କିଏ କାହାକୁ ଆଉ ଦେଖି ପାରିବୁ କି ନାହିଁ ବୋଲି ମନରେ ଚିନ୍ତା ଥିଲା । ସେଇଥିପାଇଁ ମନଟା ଅମାନିଆ ହୋଇ ପଡୁଥିଲା । ତିନି ଜଣଙ୍କ ଆଖିରୁ ଲୁହର ଧାର ଗଡ଼ି ଚାଲିଥିଲା । କେହି କାହାକୁ ବୋଧ ଦେବାର ନଥିଲା ।

ମାଇଁ ମୋତେ ପାଖକୁ ଟାଣି ନେଲେ । ଥରଥର ହୋଇ ଯାଉଥିବା ହାତରେ ମୋ ପିଠି ଆଉଁସି ଦେଇ କହିଲେ, 'ମୋର ଆଉ ବେଳ ନାହିଁରେ ବାବୁଲ ! ମୋ ମରିବା ଖବର ଶୁଣିଲେ ବର୍ଷକ ଭିତରେ ଥରେ ହେଲେ ଆସି ବୁଲି ଦେଇ ଯିବୁ । ତୁ ତ ଭଣଜା ମୋର । ଭଣଜା କିଏ ପୁଅ କିଏ ? ତୁ ହିଁ ମୋର ପୁଅ ! ସେ ଝିଅଟି ତୋରି । ତା ବାହାଘର ଭଲ ଯାଗା ଦେଖି କରିବୁ । ତା ମନ ଚିହ୍ନି ବର ଖୋଜିବୁ । ଲୋକେ ହସିବେ – ହସନ୍ତୁ– ତୋ ଜୀବନଟା ଛାରଖାର ହୋଇଗଲା । ଝିଅକୁ ସବୁ ପ୍ରକାରର ସୁଖ ଦେବୁରେ ! ନିଜ ଦେହ କଥା ବୁଝିବୁ ।'

ମାଇଁ ଆଉ କିଛି କହି ପାରିଲେନି । ତାଙ୍କ ଓଠ ଗାଲ ସବୁ ଥରୁଥିଲା ।

ମଟରରେ ବସୁ ବସୁ ଲଖୋବା ମୋ ପାଦ ଛୁଇଁ ଓଳଗି ହେଲା । ଛୁଆଙ୍କ ଭଳି ଭେଁ ଭେଁ ହୋଇ କାନ୍ଦୁଥିଲା । ତାକୁ କହିଥାଆନ୍ତି ମାଇଁଙ୍କ କଥା ବୁଝିବୁ । କିନ୍ତୁ କହି ପାରିଲିନି । ପାଟିରୁ କଥା ବାହାରିଲା ନାହିଁ ।

'ଦେହ କଥା ବୁଝୁଥିବ..... ବାବୁ ।'

ହଁ, ମୋତେ ଏବେ ମୋ ଦେହର ଯତ୍ନ ନେବାକୁ ପଡ଼ିବ । ଏବେ ଦମୟନ୍ତୀର ବାହାଘର ମୋର ଦାୟିତ୍ୱ । ଲଖୋବାର ଝିଅ ବାହାଘର ପାଇଁ ବି ଟଙ୍କା ପଠାଇବା ପାଇଁ ପଡ଼ିବ । ମୋତେ ବଞ୍ଚିବାକୁ ପଡ଼ିବ ।

ଦୁଲାଙ୍ଗୀ ଦୋକାନ ଆଗରେ ଲୋକେ କାର୍ଡ଼ଧରି ଧାଡ଼ି ବାନ୍ଧି ଛିଡ଼ା ହୋଇଥିଲେ । ବରଗଛ ତଳେ କିଏ ମିଶ୍ରି ପୁଡ଼ିଆଟିଏ ରଖି ଦେଇ ଯାଇଥିଲା । ମନ୍ଦିର ବୁଲାଣି ବୁଲିଲା ବେଳକୁ ମଟର ନାଲିଧୂଳି ଉଡ଼େଇ ଆଗକୁ ବଢ଼ିଗଲା ।

ବନ୍ଦର ଉପରେ ପହଞ୍ଚିଲି । ମୋ'ରି ବାଟକୁ ଅନେଇ ମାନୁ ଛିଡ଼ା ହୋଇଥିଲା । ଗୋଟିଏ ଛୋଟ ଟ୍ରଙ୍କ ଉପରେ ଦମୟନ୍ତୀ ବସିଥିଲା । ମୋତେ ଦେଖି ଛିଡ଼ା ହୋଇ ପଡ଼ିଲା ।

ବୋଟ୍ ଆସି ବନ୍ଦରରେ ଲାଗିଥିଲା । ଡଙ୍ଗାରେ ଜିନିଷ ପତ୍ର ସବୁ ବୁହା ଚାଲିଥିଲା । ସମସ୍ତେ ତରତର ହେଉଥିଲେ ।

ପାହାଡ଼ ଉପରେ ଡାକବଙ୍ଗଳାକୁ ଚାହିଁ ମୁଁ ମୁହୂର୍ତ୍ତଟିଏ ସ୍ଥିର ହୋଇଗଲି । ସେତିକିବେଳେ ଦମୟନ୍ତୀର ଶାଢ଼ୀ ସଜାଡ଼ି ଦେଇ ମାନୁ ତା'କାନରେ ଚୁପ ଚୁପ କରି କହୁଥିଲା, 'ନିଜ ହାତରେ ଭଲ ଜିନିଷ ସବୁ ରାନ୍ଧି ଖୁଆଇବୁ..... ତାଙ୍କୁ ବାବା ବୋଲି ଡାକିବୁ । ଯଦି କିଏ ମାଆ କେଉଁଠି ଅଛି ବୋଲି ପଚାରେ, କହିବୁ ଛୋଟବେଳୁ ମାଆ ମରିଯାଇଛି ।'

ମୋ କାନମୂଳ ଝାଇଁ ଝାଇଁ ହୋଇଗଲା । ଆଖିରେ ଲୁହ ଭର୍ତ୍ତି ହୋଇଗଲା ।

ଶହେଟଙ୍କା ବାହାର କରି କହିଲି, 'ନିଅ, ମୁଁ ନିୟମିତ ପଠେଇବି ଏଥର । ନିଜ ଦେହର ଯତ୍ନ ନେବ ।'

'ନାଁ, ନାଁ, ସେସବୁ ମୋର କିଛି ଦରକାର ନାହିଁ,' କହି ପଛକୁ ଘୁଞ୍ଚିଗଲା ମାନୁ । କହିଲା, 'ତୁମଠାରୁ ମୋର ଆଉ କିଛି ଲୋଡ଼ା ନାହିଁ ।'

'କିନ୍ତୁ କାହିଁକି ?'

'ଯେତିକି ମିଳିଛି ସେଇ ଯଥେଷ୍ଟ... । ତୁମର ଯାହା ଇଚ୍ଛା ହେଉଛି ସବୁ ତୁମ ଝିଅ ପାଇଁ କର.... ।'

ସେ ତା' ଲୁଗାକାନି ନେଇ ଆଖି ପୋଛିଲା । ଆଖି ନାକ ସବୁ ଲାଲ ଦିଶୁଥିଲା । ସାରାରାତି କାନ୍ଦିଥିବ ବୋଧହୁଏ !

ଦମୟନ୍ତୀ ହାତରେ ବ୍ୟାଗଟିଏ ଧରି ଡଙ୍ଗାରେ ବସିଲା । ତା ପଛେ ପଛେ ମୁଁ ବି ଡ଼ଙ୍ଗା ଉପରକୁ ଗଲି । ଡଙ୍ଗାରୁ ଯାଇ ଆମେ ବୋଟ୍ ଉପରେ ଚଢ଼ିଲୁ । ବୁଲି ବୁଲି ବୋଟ୍ ଆଗକୁ ଆଗକୁ ଚାଲୁଥିଲା । ଆମେ ଦିଶିବୁ ବୋଲି ମାନୁ ବନ୍ଦର କଡ଼କୁ ବୁଲିଯାଇ ଗୋଟିଏ ବଡ଼ ପଥର ଉପରେ ଛିଡ଼ା ହୋଇଥିଲା । ତାକୁ ଦେଖି ମୋତେ ଭୟ ଲାଗିଲା ! ଟିକିଏ ଏପଟ ସେପଟ ହେଲେ ସିଧା ପଡ଼ିବ ଯାଇ ପାଣି ଭିତରେ ।

ତା'ରି ମୁଣ୍ଡ ଉପରେ ଡାକବଙ୍ଗଳା ଦିଶୁଥିଲା ଏବେ ।

ଡ଼େକ ଉପରେ ଛିଡ଼ାହୋଇଥିଲୁ ମୁଁ ଓ ଦମୟନ୍ତୀ । ମୁଁ ଆଉ ଚଷମାଟି କାଢ଼ି ପିନ୍ଧିଲି । ଶାଢ଼ୀକାନିକୁ ଦାନ୍ତରେ କାମୁଡ଼ି ମାନୁ ହାତ ହଲଉ ଥିଲା । ବୋଟ୍‌ର ପୁଙ୍ଗା ବାଜି ଉଠିଲା । କଲିଜା କମ୍ପିଗଲା ସେ ଶବ୍ଦରେ । ସାମ୍ନାର ଧୂସରବିନ୍ଦୁଟି ଦେଖାଦେଇ ପୁଣି ଲୁଚିଗଲା ।

ଦମୟନ୍ତୀ ବେଞ୍ଚ ଉପରେ ରଖିଥିବା ବ୍ୟାଗଟିକୁ ଉଣ୍ଡାଳୁଥିଲା । ବ୍ୟାଗ ଭିତରୁ ଡବା କେତୋଟି ବାହାରି ତଳେ ପଡ଼ିଗଲା ।

'ଏ ଡବାରେ କ'ଣ ସବୁ ଅଛି କିରେ ?'

' ଏ ଡ଼ବାରେ ଜଳଖିଆ ଜିନିଷ ଅଛି ।' ଗୋଟିଏ ଡବା ହାତରେ ଧରି ସେ କହିଲା ।

'ଆଉ ସେ ରଙ୍ଗୀନ ଡବାରେ କ'ଣ ଅଛି ?'

ଦମୟନ୍ତୀ ମୋ ଆଗରେ ସେ ଡବାଟିକୁ ଖୋଲିଲା । କୋଡ଼ିଏ ବର୍ଷ ପୂର୍ବରୁ ନିଜ ଘରସଂସାର କରିବ ବୋଲି କରିଥିବା ତୋରଣ, ତକିଆ ଖୋଳ...

ମୁଁ ଆଉ ଦେଖିପାରିଲିନି । ମୋ ଆଖିରେ ଲୁହ ଭର୍ତ୍ତି ହୋଇ ସବୁମତେ ଝାପ୍‌ସା ଦିଶୁଥିଲା । ଟପଟପ ହୋଇ ଲୁହ ଗଡ଼ି ପଡ଼ିଲା ଆଖିରୁ ।

ବୋଟ୍ ଆଗକୁ ଚାଲିଥିଲା ପାଣି କାଟି କାଟି ।

ମାନୁର ଚେହେରା ବି ଆଖି ଆଗରୁ ଉଭେଇ ଯାଉଥିଲା ।

ପାହାଡ଼ ଉପର ଡାକବଙ୍ଗଳାଟି କିନ୍ତୁ ଛାଇ ଛାଇଆ ହୋଇ ଦିଶୁଥିଲା ।

* *



ତିନୋଟି ଉପନ୍ୟାସ, 'ଚକ୍ର', 'ସାରେ ପ୍ରବାସୀ ଘଡ଼ିବେ' ଏବଂ 'ସ୍ୱ-ଗତ' ପରେ ଚତୁର୍ଥ ଉପନ୍ୟାସଟି ହେଉଛି 'ମହାନନ୍ଦା'। ଦଇତ୍ତ୍ୱୀଙ୍କର ଏ ଚାରୋଟିଯାକ ଉପନ୍ୟାସର ବିଷୟବସ୍ତୁ ଭିନ୍ନ ଭିନ୍ନ ଧରଣର କାହାଣୀ ଉପରେ ଆଧାରିତ।

ଦକ୍ଷିଣ ରତ୍ନଗିରି ଏବଂ ଗୋମନ୍ତକ ଅଞ୍ଚଳର ମନ୍ଦିରମାନଙ୍କ ଆଖପାଖରେ ଦେବଦାସୀ ପ୍ରଥା ବହୁତ ଦିନ ପର୍ଯ୍ୟନ୍ତ ପ୍ରଚଳିତ ଥିଲା। ସୌଭାଗ୍ୟବଶତଃ ଏଇ ପ୍ରଥା ଓ ଏହାକୁ ବଞ୍ଚାଇ ରଖିଥିବା ସଂସ୍ଥାମାନ ଧୀରେ ଧୀରେ ସେମାନଙ୍କର ଅସ୍ତିତ୍ୱ ହରାଇ ବସିଲେ। ବର୍ତ୍ତମାନ ସେପରି ସଂସ୍ଥାମାନଙ୍କର ଅବଶେଷ କେବଳ ଦେଖିବାକୁ ମିଳିଥାଏ। 'ମହାନନ୍ଦା'ର କାହାଣୀଟି ସେଇ ଅବକ୍ଷୟମୁଖୀ ସମୟର ଏକ ମର୍ମାନ୍ତିକ ପ୍ରତିଫଳନ।

ସାମାଜିକ ବନ୍ଧନରେ ଛନ୍ଦି ହୋଇଯାଇଥିବା ଦୁଇଟି ମଣିଷର ହୃଦୟକୁ ଦୋହଲାଇ ଦେଇଥିବାର ଏଇ ପ୍ରେମ କାହାଣୀଟି ମନରେ ପ୍ରଚୁର ଉତ୍କଣ୍ଠା ଆଣି ଦିଏ। ଏ କାହାଣୀରେ ନାଟ୍ୟ ଅଛି, କିନ୍ତୁ ନାଟକ ନାହିଁ। ଶାଶ୍ୱତ ପ୍ରେମ ଅଛି, ପ୍ରତାରଣା ନାହିଁ। ଆବେଗର ତରଳପଣ ଅଛି, ମାତ୍ର ବିହ୍ୱଳତା ବା ବିବଶତା ନାହିଁ।

ପରିଶେଷରେ ଏତିକି କହିହେବ ଯେ ଏ ପ୍ରେମ କାହାଣୀଟି ବାସ୍ତବ ହୋଇଥିଲେ ବି ଗୋଟିଏ 'ଜୁଆ ଖେଳ' ପରି ମନେହେବ।